—ପ୍ରତିଷ୍ଠା—

ସଙ୍ଗୀତ-ସୁରସିକ ସକଳସଦ୍‌ଗୁଣାଲଂକୃତ

ମହାମହିମ ବୀର-ବରେଣ୍ୟ

ମେହରବାନ୍-ଅଇ-ଦୋସ୍ତାନ୍

ଶ୍ରୀ ଶ୍ରୀ ଶ୍ରୀ ମଦନମୋହନ ସିଂହ ଦେବ ବାହାଦୂର

ରାଜାସାହେବ୍ ଧର୍ମକୋଟ—

ମାନନୀୟ ମହାରାଜ,

ଶ୍ରୀ ଯୁଗମୁଙ୍କ ଅଯାଚିତ କୃପାର କଣାମାତ୍ର ପାଇ ଅଜ୍ଞ ଏ ଅଧମ ପ୍ରତିଷ୍ଠାରେ ନିଜକୁ ଗୌରବମୟ ସୌରଭମୟ ମନେ କରୁଛି—ତାହାର ଫଳ ସ୍ୱରୂପ ଏଇ କ୍ଷୀଣ 'ବୀଣା' ଶ୍ରୀ ସର୍କାରଙ୍କ ଦ୍ୱାରା ପ୍ରସ୍ତୁତ, ଗ୍ରଥିତ—ଅଜ୍ଞା ହେଉ—ଏଇ ରାଜାନୁଗ୍ରହ-ପୁଷ୍ଟ 'ବୀଣା' ଧରି ଶ୍ରୀ ଯୁଗମୁଙ୍କ ଯଶୋଗାନ କରିବ ।

ଶ୍ରୀ ଯୁଗମୁଙ୍କ
ସଦ୍‌ଗୁଣମୁଗ୍ଧ
ସତ୍ୟ—

ବସନ୍ତେ—
ଶକାବ୍ଦ ୧୮୫୬ ମେଷ, ଦି ୫ ନାଂ

## —ଆରତି—

ଶୁଷ୍କ ନିକୁଞ୍ଜ ମମ

ପୁଷ୍ପ ପର୍ଯ୍ୟୁସିତ

ବସନ୍ତର ଅନ୍ତ

ମଲୟ ସ୍ଥଗିତ

ଜୀର୍ଣ୍ଣ କୁଟୀରେ

କ୍ଷୀଣ ବୀଣା-ତାରେ

ଆସ ମା ଆସ ମା

ତ୍ରିଲୋକ-ଆଲୋକମୟୀ

ଭାରତି ଭାରତି—

ଓଁ ଶାନ୍ତିଃ ! ଶାନ୍ତିଃ !! ଶାନ୍ତିଃ !!!

## —ପୂଜା—

ଶିକ୍ଷାଗୁରୁ, ପରମାର୍ଥୀ, ଖ୍ୟାତଯାଜ୍ଞିକ, ଋଷିପ୍ରତିମ, ଜ୍ଞାନୀପ୍ରବର,
ସ୍ୱର୍ଗୀୟ ପଣ୍ଡିତ—

ଅନ୍ତର୍ଯ୍ୟାମୀ ଦାସ ବାବାଜୀ—

ବାବା—

ପୁଷ୍ପାଞ୍ଜଳି ନାହିଁ ଯହିଁରେ ଆଙ୍କ ଶ୍ରୀ ଚରଣ ପୂଜା କରିଥାନ୍ତି—ଅଟ୍ଟାଳିକା ନାହିଁ ଯହିଁରେ ଆସନ ସଜାଡ଼ି ଥାନ୍ତି—ନୈବେଦ୍ୟ ନାହିଁ ଅର୍ଚ୍ଚନା କରିଥାନ୍ତି—ଅଛି କେବଳ ଅନ୍ତରର ଅନନ୍ତ ଆକାଂକ୍ଷା—ନୟନର ସଜଳ ବେଦନା—ପ୍ରାଣର ଆକୁଳ ବିପୁଳ କଳ୍ପନା—

ଏଇ ଶିଶିର ସଂଙ୍କରେ ବସନ୍ତର ମାଧବୀ ମୁକୁଳ କାହିଁ ପାଇବି—ଜଳଦର ଅମାନିଶାରେ ଶରତର ଜ୍ୟୋତ୍ସ୍ନା କାହିଁ ପାଇବି—

ଆଜି ପୂଜା କରୁଛୁ—ପୁଷ୍ପାସାର ଆସନରେ ନୁହେଁ—ଦେବତାର ସିଂହାସନରେ ନୁହେଁ—ପବିତ୍ର ଘଣ୍ଟା ଧ୍ୱନିରେ ନୁହେଁ—ପୂଜା କରୁଛୁ ଚିନ୍ତାକ୍ଲିନ୍ନ ଲକ୍ଷ୍ୟହୀନ—କ୍ଷୁଦ୍ର କବିତାଞ୍ଜଳିରେ—କ୍ଷୀଣ 'ବୀଣା'-ସ୍ୱରରେ—

କବିତା-ଅର୍ଘ୍ୟ ଗ୍ରହଣ କର—ଜନ୍ମ ସାର୍ଥକ ହେଉ—ସ୍ୱର୍ଗରୁ, କେଜାଣି କେଉଁ ଦେଶରୁ, ଏଇ ହତଭାଗ୍ୟ ପୁଅକୁ ଆଶୀର୍ବାଦ କର ।

ଆଜି ଯେଉଁ ଦିନ—ମନେ ପଡ଼େ ସେଇ ଦିନ—ତୁମ୍ଭ ଜଣ କର୍ଦ୍ଦନରେ ବସି ଆଙ୍କିଥିଲେଇଁ ଯେଉଁ ସ୍ୱର୍ଣ୍ଣମୟ ସ୍ୱପ୍ନମୟ ନନ୍ଦନ-ଉନ୍ମାଦକର ଭବିଷ୍ୟତ ଛବି—ନିର୍ମମ ନିୟତି ବିଷମୟ ଅଗ୍ନିମୟ ହାତେ ଭାଙ୍ଗି ଫିଙ୍ଗି ଦେଲା ସବୁ । ଦେବତା ! ବହୁ ଦୂରରୁ ଏଇ ଜୀବନ୍ମୃତ ସନ୍ତାନ ଉପରେ ଅଙ୍କ ଅମୃତ ସେଚନ କର—ବସନ୍ତର ଫୁଲ ଦିଅ—କୋକିଳର ଗାନ ଦିଅ—ଶରତର ଜ୍ୟୋତ୍ସ୍ନା ଦିଅ—ଉଷର ଉର୍ବର ହେଉ—ଶ୍ମଶାନ ନନ୍ଦନ ହେଉ—ଶିଶିରେ ମଳୟ ବହୁ—ପୁଣି ଆପଣଙ୍କ ସେଇ ଶ୍ରୀଚରଣ ଦେଖିବି—ନାଚିବି—ଗାଇବି—କାନ୍ଦିବି—ହସିବି ।

ପୂଜ—ଏଇ ପୂଜା

ଉଦବାସ୍ତୁ 'ଗୀତାପୀଠ'
ବୈଶାଖ-ଧବଳ ପକ୍ଷ—

ପୁଅ—
ସତ୍ୟ ପାଢ଼ୀ

—ଋଣୀ—

ଆଶୀର୍ବାଦ— ଧନ୍ୟବାଦ—

ଗଂଜାମ ହରଡ଼ାପଦରର

ଗୁଣିଗୁଣଗ୍ରାହୀ ଶ୍ରୀମାନ୍ କୃପାସିନ୍ଧୁ ପାଣିଗ୍ରାହୀ

ପ୍ରୋପ୍ରାଇଟରଙ୍କ ଅସୀମ ଉଦାରତାରେ

ଆଜ ଏ 'ବୀଣା' ଲୋକ ଚକ୍ଷୁରେ—

ଏଇ ନିଃସ୍ୱାର୍ଥ ସାଦର ସାହାଯ୍ୟରେ

ଆଜୀବନ ଋଣୀ ମୁଁ—

—ପୁଲକକୁଞ୍ଜ—
ଗୁମସର-ନୂଆଁଗାଁ
ରସଲକୋଣ୍ଡା ୧ । ୫ । ୩୦

ଶୁଭଚନ୍ତକ;
ଡାକ୍ତର ଶ୍ରୀ ସତ୍ୟବାଦୀ କବୀନ୍ଦ୍ର—

## —ଅର୍ପଣ—

ଏଇ

'ବୀଣା'-ତନ୍ତ୍ରୀରେ

ସ୍ୱର ତୋଳନ୍ତି ଯେ

ସେଇ

ନାଟ୍ୟ-କଳା-କୁଶଳ

ସଙ୍ଗୀତ-ସାହିତ୍ୟ-ପୂତ——

ଆଦର୍ଶ ଯୁବରାଜ

ଶ୍ରୀ ଶ୍ରୀ କୃପାସିନ୍ଧୁ ପଟ୍ଟଦେବଙ୍କ

ବାଦ୍ୟ-ଯନ୍ତ୍ର-ସୁପଟୁ ଶ୍ରୀକରରେ

'ବୀଣା'

ସାଦରେ ଅର୍ପିତ—

## —ତର୍ପଣ—

ବିରାମ ଭୂମିରୁ ଅପର ପାରେ
ଯାହା ସ୍ୱଳନର ତୂର୍ଯ୍ୟ-ତାନ
ଛୁଟିଲା ନିନାଦ ଶ୍ରବଣେ ତବ
ନ ବୁଝିଁ ହେ ସଖା କାହା ଆହ୍ୱାନ—

ଭାରତ-ନାଟ୍-ଯାତ୍ରା-ଉପଳ
ମଧ୍ୟ ଗଗନେ ଲଭିଲ ଅନ୍ତ
ଏ କାଳ ରଜନୀ ହୋଇଲା ଅହି
ଅକାଳ ଅଶନି-ଶବଦ-ତ୍ରସ୍ତ—

କେଉଁ ଦେଶେ ତୁମି କେଉଁ ବେଶେ ଗମି, ବସିଲ ହେ ତବ କର୍ମ-ପୀଠ
ସେ ଦେଶ କି ତବ ଚିତ୍ତ ସାଧ୍ୟ, ଗଢ଼ କି ସେ ସ୍ଥାନେ ସାଧନ-ପୀଠ—

ସ୍ୱଦେଶକୁ ଯା'ର ନିତ୍ୟ ସପନ
ପୂତ ମଦତ ମୁକ୍ତି-ମନ୍ତ୍ର
[ଯେଉ] ମଣ୍ଡି ହେ ତବ ସୃଜନ-ବେଦୀ
ଭଗବତଗୀତା ବୈଷ୍ଣବୀ ଯନ୍ତ୍ର—

ବିଶ୍ରାମ ନେଲ ଏ ନୂଦ୍ରେ ଭୂମର
ତେଜିଲ ସ୍ୱଜନ ଭଗିନୀ ବନ୍ଧୁ,
ଅକାଳି ଶପନେ ମୁଦିଲ ନୟନ
ଛୁଟିଲନି ହେ ଗୋପବନ୍ଧୁ—

ନାୟକ ଶୂନ୍ୟ ଏ ଦେଶ ସୈନ୍ୟ, ଶାନ୍ତି ପତାକା ଧାରଣେ ଅଜ୍ଞ
ଓହ୍ଲାଇ ଅସ ଅମର-ଭୁବନୁଁ, ମୋହନ-ବଂଶୀ ଉଠୁ ବାଜି—

[ ସ୍ୱ:— ଲୋକ ଅମର ]

## ମୋ କଥା

ବଡ଼ ଆଦରର ଧନ ଥିଲି ମୁଁ ଦାଦାଙ୍କର ମୋର—ଯେତେବେଳେ ମୋତେ ୧୪ ବର୍ଷ, ମୋ ଦାଦାଙ୍କର ଦେହାଣି ବା ପ୍ରେରଣାରେ ଉଷ୍ଟ ଘୋଟ କ'ଣ ଏଣ୍ଟୁ ତେଣୁ କବିତା ଏ ଲେଖିବାକୁ ଲାଗିଲି । ସ୍ୱଃ ନିଧାକୃଷ୍ଣଭଞ୍ଜ ଯେ—ଯାଜ୍ଞିକପ୍ରବର—ମୋର ସେଇ କ୍ଷୁଦ୍ର କବିତାଗୁଡ଼ିକ ଦେଖି ମୋତେ ବହୁ ଉତ୍ସାହଦେଇ ପୁସ୍ତକ ଦେଲେ—ସେ ଋଷିଙ୍କ ଆଶୀର୍ବାଦରେ ମୋ କ୍ଷୁଦ୍ର କବିତାଗୁଡ଼ିକ ଅନେକ କଣ୍ଠରେ ଶୁଣିବାକୁ ପାଉଥିଲି । ତବେ ଦାଦା କହୁଥିଲେ, "ତୁ କେତେ ସୁନ୍ଦର କବିତା ଲେଖୁଛୁ ଦେଖ, ତୋ କବିତା-ଗୁଡ଼ିକ ଛପାଇ ଦେବି ।"

ହେଲା ନାହିଁ —ଜଗ୍ଧରର ଇଗ୍ରାମସ୍ତ ତା କରିଦେଲା ନାହିଁ—ସେ ସ୍ୱର୍ଗରାଜ୍ୟରେ—ତାଙ୍କ ଇଚ୍ଛା ପୂର୍ଣ୍ଣ କରିବାକୁ ଯାଇ ସେ ପୁରାତନ କବିତାଗୁଡ଼ିକ ମୋର ଅନେକ ହାତରେ—ନବୀନ ରୂପ ନାହିଁ—ପ୍ରକାଶ କରିବା ଇଚ୍ଛା ବି ଥିଲା —ତାଙ୍କର ବନ୍ଧୁ ବର୍ଗଙ୍କ ଅନୁରୋଧ ଭାଙ୍ଗି ପାରିଲି ନାହିଁ

× × × × × × × × ×

ପ୍ରକାଶବେଳେ ଏଇ ଜୀର୍ଣ୍ଣ ବୀଣାରେ 'ନବୀନ' ସଂପାଦକ ଶ୍ରଦ୍ଧେୟ ଶ୍ରୀ ଶ୍ରୀ ଯୁବରାଜ ସାହେବ, ମହନ୍ତ୍ର ଯଥେଷ୍ଟ ନବୀନତା ଦ଼ କରିଛନ୍ତି—

ପ୍ରିୟ ପ୍ରୋଫେସରଙ୍କ ଶ୍ରୀମାନ କୁଞ୍ଜବିହାରୀ ପାଣିଗ୍ରାହୀ [ଦ୍ୱାରଡ଼ାପଦର] 'ବୀଣା' ପାଇଁ ବହୁ ସମୟ ବହୁ କଷ୍ଟ ସ୍ୱୀକାର କରିଛନ୍ତି—ତାଙ୍କର ଏଇ ସ୍ନେହ ଜୀବନର ଅମୂଲ୍ୟ—

ଶ୍ରୀ କୈବଲ୍ୟ ପ୍ରସାଦ ସାହୁ ପ୍ରକାଶ ପୂର୍ବରୁ 'ବୀଣା' ପ୍ରକାଶ କରିବା ପାଇଁ ବାରମ୍ବାର ମୋତେ ଅନୁରୋଧ କରି ଯଥେଷ୍ଟ ଉତ୍ସାହ ଦେଇଛନ୍ତି ।

ପଣ୍ଡିତ ଶ୍ରୀ ବନମାଳୀ ମିଶ୍ର କବିବର୍ଷଙ୍କ କାବ୍ୟତୀର୍ଥ ତାଙ୍କର ଅମୂଲ୍ୟ ସମୟ ଦେଇ ପୁସ୍ତକର ଅନେକ ଅଂଶ ସଂଶୋଧନ କରି ମୋତେ କୃତଜ୍ଞ କରିଛନ୍ତି

—ଷ୍ଟୋର ପ୍ରେସ୍‌ର ସୁଯୋଗ୍ୟ ମାନେଜର ଉତ୍ସାହୀ ଯୁବକ ଶ୍ରୀମାନ ସତ୍ୟନାରାୟଣ ଆଚାର୍ଯ୍ୟ ନିଜେ ଦୃଷ୍ଟି ଦେଇ ପ୍ରିଣ୍ଟିଙ୍ଗ୍‌ରେ ବିଶେଷ କୃତିତ୍ୱ ଦେଖାଇଛନ୍ତି—ତାଙ୍କୁ ଧନ୍ୟବାଦ । 'ବୀଣା'ର ଅଧିକାଂଶ ସଙ୍ଗୀତ ମୋର ଆଦରର ବନ୍ଧୁଗଣ, ଶ୍ରୀ ରାମବ୍ରହ୍ମ, ବି. ଏ.,ଏଲ୍. ଟି, ଶ୍ରୀ ଅନନ୍ତରାମ ପଟ୍ଟନାୟକ, ଶ୍ରୀ ବ୍ରଜବନ୍ଧୁ ତ୍ରିପାଠୀ, ଶ୍ରୀ ଆରାମ୍ ପାତ୍ର, ଶ୍ରୀ ଶଶିଭୂଷଣ ରଥ [ଦୈନିକ ଆଶା ସଂପାଦକ], ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ବି. ଏ., ବି. ଏଲ୍., ପଣ୍ଡିତ ଶ୍ରୀ ଗଦାଧର ବିଦ୍ୟାଭୂଷଣ, ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି ଏମ୍. ଏ.,ଏଲ୍.ଟି. ଶ୍ରୀ ଶ୍ରୀକଣ୍ଠ ଶତପଥୀ ବି. ଏ., ଏଲ୍. ଟି., ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ., ଶ୍ରୀ ଗୋପୀନାଥ ଦାସ, ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ ଏମ୍. ଏ., ଶ୍ରୀ ଈଶ୍ୱର ସାହୁ, ଶ୍ରୀ ଭୁବନେଶ୍ୱର ରଥ ବି.ଏ., ବି.ଏଲ୍, ଶ୍ରୀ ଦୟାନିଧି ମିଶ୍ର ବି.ଏଲ୍, ଏଲ୍. ଟି ଓ ଶ୍ରୀ ଶିବରାମ ରଥ ବି.ଏ., ଏଲ୍. ଟି., (ଜିଲ୍ଲା ଶିକ୍ଷାଧିକାରୀ) ସାମୟିକ ମୋ ସଙ୍ଗୀତ ଶୁଣି ଯେଉଁ ଉତ୍ସାହ ଦେଇଥାନ୍ତି ସେଥି ପାଇଁ ତାଙ୍କୁ ଅନ୍ତ ଅନ୍ତରର ଅନନ୍ତ ଆନନ୍ଦ ଜଣାଉଛି—

କଲ୍ୟାଣର ଶ୍ରୀମାନ ମୃତ୍ୟୁଞ୍ଜୟ ପଣ୍ଡା, ଶ୍ରୀମାନ କମ୍ବୁପାଣି ତିଆଡ଼ୀ, ଶ୍ରୀମାନ୍ ଭକ୍ତରାମ ପଟ୍ଟନାୟକ, ଶ୍ରୀମାନ ମଦନ ମୋହନ ପଟ୍ଟନାୟକ, ଶ୍ରୀମାନ୍ ରାଜ ମୋହନ, ଶ୍ରୀମାନ୍ ଫ୍ରାଙ୍କଲିନ ପାଲ ପାତ୍ର, ଶ୍ରୀମାନ୍ ଶଶିଭୂଷଣ ସାହୁ, ଶ୍ରୀମାନ୍ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ ପ୍ରଭୃତି ମୋର ଅଧିକାଂଶ ଖଣ୍ଡ କବିତା ଥିଏଟର ଅଭିନୟ ଓ ଅନ୍ୟାନ୍ୟ ସମୟରେ ଗାଇ ମୋତେ ପ୍ରଚୁର ଉତ୍ସାହ ଦେଇଛନ୍ତି—ସେମାନଙ୍କୁ ଆଶୀର୍ବାଦ—

× × × × × × × × ×

ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ ଓ ସ୍ୱର୍ଗତ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ କାବ୍ୟକଣ୍ଠ ମୋ କବିତା ସମ୍ବନ୍ଧେ ପ୍ରଭୂତ ପ୍ରଶଂସା ପତ୍ରରେ ମୋତେ ଆଶୀର୍ବାଦିତ କରିଛନ୍ତି—

ଶ୍ରୀଯୁକ୍ତ ନୀଳମଣି ବେହେରା 'ବୀଣା' ମଲାଟ ବ୍ଲକ୍‌ଟି ଅଙ୍କନ କରି ପୁସ୍ତକର ସୌନ୍ଦର୍ଯ୍ୟ ବଢ଼ାଇଛନ୍ତି—

—ସତ୍ୟ—

—ଓଁକାରେ ଅଂଙ୍କା—

ଜାଣ ନାହିଁ
କେବେ
ତୁମ ନାମ ଧରି
ଜାଗି ନାହିଁ
ସେଇ ବାସନା

ଯେ ଦଗେ
ଅନାଏଁ
ସୁନ୍ଦର ହେ ସଖା
ତୁମ ରୂପ
ତୁମ ସରଜନା—

ବସିବି ନାହିଁ ମୁଁ ଜପଦ୍ୱାର ଧରି
ଅଜପା ମୋ ଜପ ନାହିଁ ତା ସଂଖ୍ୟା
ତୁମରି ଛଳନା ତୁମ କଳପନା
ଓଁକାରେ ଏ ହୃଦୟେ ଅଂଙ୍କା—

—[ସ୍ୱର—କେ ସ୍ୱଦେଶୀ]—

## —ଝୁରିବି—

ଭୁବନେ ତ ନାହିଁ
ଜୀବନେ କେମନେ ପାଇବ
ସପନେ ତ ନାହିଁ
ନୟନେ କେମନେ ଦେଖିବ—
ନିର୍ଜନତା-କୋଳେ
ନୀଳାମ୍ବର ତଳେ
ନୀରବେ ଗୋପନେ ଝୁରିବି
ଶରତ-ନିଶୀଥେ
ସମୀରଣ-ପଥେ
ମଉନେ ସେ ଗୁଣ ଗାଇବ—
ଉଷା-ପଦ୍ମ-ବାସେ
ନିଶା-ଚନ୍ଦ୍ର-ହାସେ
ଚରଣ ଦୁଇଟି ପୂଜିବ
ଝଞ୍ଜା ପବନର ହିଲ୍ଲୋଳେ
ପ୍ରଳୟ ପୟୋଧି କଲ୍ଲୋଳେ
—[ବସି]— ନିଭୃତେ ଗୋପନେ ଝୁରିବ—

[ଆଦ୍ୟତାଳ]

ବୀଣା—

# ହରି ହେ—

କରୁଣାମୟ
ବରୁଣାଳୟ
ଶରଣାଶ୍ରୟ ହର ହେ;
ହୃଦୟାସନେ ପ୍ରଭୁ ରାଜ, ପଢଟେ ପ୍ରେମ ବଢର ହେ —०—

ହେ ଅନନ୍ତ, ଭୂଲୋକ-ବନ୍ଧୁ
ନିଖିଳାନନ୍ଦ-ସୁଖ-ସିନ୍ଧୁ,
ଦେବ-ଦେବ ପରମ ସୁନ୍ଦର ସୁର, ବିଶ୍ୱ-ବିହାର ହେ ॥ ୧ ॥

ଶୁଦ୍ଧ ସରଳ ମୁକ୍ତି-ଦାତା
ଜୀବ-ଜାତ-ଜଗତ-ପିତା
ସତ୍ୟରୂପ ଜୟ ନିରଞ୍ଜନ ଦୁଃଖ-ସାଗର-ତାରୀ ହେ ॥ ୨ ।

ଭକ୍ତ-ଜନ ଅଭୟଙ୍କାର
ଶୁଭ-ସାଧକ ମନୋହାର
ସର୍ବଲୋକ-ମଧୁର-ଲୀଳା-ନିଚୟମ ଧନ୍ୟ ତୁମ୍ଭର ହେ ॥ ୩ ।

[ କଲ୍ୟାଣୀମିଶ୍ର—ରୂପକ ]

ବୀଣା—

## ତୁମ୍ଭର—

ଆକାଶେ ପାତାଳେ
କାନନେ ଭୂଧରେ
ତୁମର ହେ ଲୀଳା ତୁମର ଖେଳା
ଗିରି-ନଦୀ-ସରେ
ଅତଳ ସାଗରେ
ତୁମ ନାମ ପ୍ରଭୁ ମୁକତି-ଭେଳା ॥

ଜୀବନେ ମରଣେ
ଶୟନେ ସ୍ୱପନେ
ତବ ପ୍ରେମ-ମନ୍ତ୍ର ପୀୟୂଷ-ଧାର
ସଂପଦେ ବିପଦେ
ମାଗି ତବ ପଦେ
ଆକୁଳ ପିପାସା ପାସୋରେ ପର—୧—

ଅଗତିର ଗତି
ଭକତ-ବନ୍ଧୁ ହେ
ଦୀନର ସହାୟେ ନ କର ହେଳା
ତୁମର ପ୍ରସାଦେ
ବଂଚେ ବିଶ୍ୱ ସାରା
ମୋତେଁ ଆଜି ଢାଳ କରୁଣା-ଢୋଳା —୨—

[ ରାଗ ବେହାଗ—ଆଠତାଳ ]

ଘାଣା—

## ପଦାମ୍ବୁଜେ—

ହେ ନିରଞ୍ଜନ ବ୍ରଜ-ରଞ୍ଜନ ରାସ-ନାଚୁଆ ହରି
ମଦନ-ମୋହନ ମଧୁସୂଦନ ହେ କୁଞ୍ଜବନ ବିହାରି ॥ ୦ ॥

ନିର୍ମଳ ନବୀନ ନୀରଦ-ବରନ ନନ୍ଦ-ହୃଦାନନ୍ଦ ସମ୍ପଦ କାରି
ଗୋପ-ଗୋପୀକୁଳ —କଣ୍ଠୋଳ-ଚନ୍ଦନ
ଗୋଧନ ରକ୍ଷାକାରି —୧—

ପୀତାମ୍ବର ବର-ତ୍ରିଭଙ୍ଗି ସୁନ୍ଦର ଗୋବର୍ଦ୍ଧନ-ଗିରି-ଧାରି ମୁରାରି
ଶ୍ରୀରାଧା-ବଲ୍ଲଭ ବୃନ୍ଦାବନ-ଚନ୍ଦ୍ର
ମଧୁ ମୁରଲୀ ଧାରି —୨—

ପ୍ରେମ ଜ୍ୟୋତିର୍ମୟ ଯୋଗାନନ୍ଦ-ରୂପ ଜୟ ଯୋଗୀଜନ-ମାନସ ହାରି
ହରି ଅକିଞ୍ଚନ ସତ୍ୟ କରେ ତବ
ପଦାମ୍ବୁଜେ ଗୁହାରି —୩—

[ ସ୍ୱର— ନବ ରସିକା ଅଛି ବ୍ରଜରସିଆ ]

## କଳ୍ପନା—

ହେ ମୋହନ ଶ୍ରୀଧର ରାଧାରମଣ ॥

ନିରନ୍ତର ବ୍ରଜ-ଶାନ୍ତ-ରଜନୀ-କାନ୍ତ ସନ୍ତ-ସୁପାଳନ
ମନ୍ଦ-ହାସିତ ପ୍ରେମ-ଭୂଷିତ ଅଧରେ ମୁରଲୀ ଶୋଭନ ୧—

ପ୍ରଭୁ ହେ ଭକ୍ତଜାନନ୍ଦ-ବର୍ଦ୍ଧନ,
ସରସୀରୁହଦଲ-ନେତ୍ର, କୋମଳ-ଗାତ୍ର-ନନ୍ଦିତ ମଦନ
ସରଳ ହୃଦୟ, ସୁରସ-ନିଳୟ ନନ୍ଦସୁନ୍ଦର-ନନ୍ଦନ ୨—

ଜୟ ହେ ଦନୁଜ-ଦର୍ପ-ମର୍ଦ୍ଦନ୍,
କାନ୍ତ-କୌସ୍ତୁଭ-ହାର-ଭୂଷଣ ପୀତ ମଞ୍ଜୁଳ ବସନ
ନବୀନ ନୀରଦ-ବରନ ବରଦ ଗୋପ-ଗୋଧନ-ରକ୍ଷଣ ୩—

ବନ୍ଧୁ ହେ ବିଶ୍ୱ-ବିପଦ-ଭଞ୍ଜନ,
ପ୍ରେମାନନ୍ଦମୟ ତ୍ରିଭଙ୍ଗିମ ରୂପ ଯୋଗିଜନ-ନେତ୍ର-ଅଞ୍ଜନ
ଭବ-ଭୟାର୍ଣ୍ଣବେ ସତ୍ୟବାଦୀ ଭାବେ ମଞ୍ଜୁ ନୂପୁର ଚରଣ ୪—

[ କଲ୍ୟାଣୀ—ଅଠତାଳ ]

# ଗୁହାରି—

ନ ଘେନ କ ଦୀନ ଗୁହାର
ଭକତ-ବତ୍ସଲ ହରି କୁଞ୍ଜ-ବିହାରୀ —୦—

ଆଶା-ହୀନ ଦୁଃଖ-ନୀରେ
ଅସାର ସାର୍ ସଂସାରେ
ଭସାଅ କେତେ ନିଠୁରେ ଜୀବନେ ମାର । ୧ ।

ଦହନ୍ତି ମୋର ଶରୀର
ଦୁରିତ-ତାପ ଅପାର
ଦୟିବି ବରଷାଇଲେ କରୁଣା-ବାରି । ୨ ।

ପତିତ-ପାବନ ନାମ
ଅଟୀବ ଭରସା-ପୂର୍ଣ୍ଣ
ଗତି ଦାନେ କ ବିଗିଡ଼ କର ହେ ଡେରି । ୩ ।

ସତ୍ୟବାଦୀ ଭକ୍ତିଭରେ
ନିତ୍ୟ ଭାବଇ ମନରେ
ସତ୍ୟ କି କୃପା ମୋ ପାଁରେ ଗଲାଣି ସରି । ୪ ।

[ ତେଜିଲେଣି ଦେଶ ସକଳ—ସ୍ୱର ]

ବୀଣା—

## ବୋଲ—

ରାମ ହରେ ବୋଲ ମୂଢ଼ ତୁ
ଜୟ ସୀତାରାମ ହରେ ବୋଲରେ
ପ୍ରେମ-ଲୋଚନ ଖୋଲରେ
ସେହି ନାମ ଭଜନେ ପଥ ଚାଲରେ—୦—

ମାୟାଘର ଏହି ଦୁନିଆ
ତୋର ପୁଛ, କେଉଁ ସୁଖ ସାଲରେ
ମାଟି ଦେହ ଏ ଖଣ୍ଡିରେ
କେତେ ମାଠିବସ୍ତୁ ବାସ ତେଲରେ ୧—

ପିତା ମାତା ଭାଇ ଭଗିନୀ
-ବନ୍ଧୁ କେହି ତୋର ଭଲରେ
ଯେବେ ଆଖି ବୁଜବୁ
ମରି ତ ଯିବ ଜୀବ ଏହି ସବୁ ଗେଲରେ ୨—

ରାମ ଚରଣେ ମନ ଲଗାରେ
କର ଅଲଗା ମୋହପଘା ପାଲରେ
ଲୋଭ-ଦରବ ବଡ଼ ଦଗାରେ
ଲଗା ନ୍ହ ତୁ ପରମଗା ମାଲରେ ୩—

[ କଓ୍ୱାଲି ତାଳ ]

## ମନ-ଅଳି —

ଅରେ ମନ-ଅଳି, କୃଷ୍ଣ ପାଦ-ପଦ୍ମେ ଯାଇ କର କେଳି

(ଗାଅ) ଗୁଣ୍ ଗୁଣ୍ ଗୀତ ଉଚ୍ଚ ସ୍ୱନେ

ଓଁକାର ଶବଦ ଉଚ୍ଚାରଣେ

ହରେକୃଷ୍ଣ ହରେ ମିଶାଇ ତହିଁରେ ମନ୍ତ୍ର-ମଧୁପାନେ ଯାଅ ମେଳି ।୧।

ଅସାର-ସଂସାର-ବିଷ-ବନେ

ଭୁଲନା ଭ୍ରମନ ପ୍ରଲୋଭନେ

ହୋଇ ସାବଧାନ ଅନାସକ୍ତିଧାନ ଅସର ସେ ମଧୁ ରସ-ଥଳୀ ।୨।

(ପ୍ରେମେ) ଉଡ଼ି ଆସ ଥରେ ଝୁଲି ଝୁଲି

ସେ ଅମୃତ-ବେଢ଼ା ବୁଲି ବୁଲି

କଉତୁକ-ବଶେ ମଜ୍ଜି ତୁ ହରଷେ ଚୁମ୍ବି ରହ ସେହି ପ୍ରେମ-କଳୀ ।୩।

କାମନା-କଣ୍ଟକ-କେତକୀରେ

ନ କର ଆଶା ଯେ କଉତୁକରେ

ଅନ ପ୍ରୀତିକରେ ଭୁଲି ଏତିକରେ ଛତିକ୍ଷାରେ ଦମ୍ଭେ ରଖ ଛଳି ।୪।

ବୀଣା—

ଯୂଈ ଜାଈ ମଲ୍ଲୀ କନିଅର

ଚମ୍ପା କୁରୁଅନା ନାଗେଶର

କାହା ବାସ ଚର ଏ ମାୟୂ ମହୀର କ୍ଷଣେ ଖେଳ କ୍ଷଣେ ଯାଏ ଜଳ । ୫ ।

କୋଷ୍ଠୀ ନନ୍ଦନର ସାର ବାସ

ପୂରୁଛି ସେ ପଦ୍ମ ଚଉପାଶ

ଶୋଭା-ଗୁଣ-ସୀମା ସେ ମନ୍ଦା ମହିମା ଦେବଜନେ ନ ପାରିବେ କଳ । ୬ ।

ସେ ନେତ୍ରେ ଚୋ ନେତ୍ର-ଦଳ ଖୁଞ୍ଚି

ହଜଗନ୍ଧ ପଭ ଥିବୁ ଲୁଚ

ହେଉଥିବୁ ବଞ୍ଚି ଶିରେ ସୁଧା ସିଞ୍ଚି ସେ ମଧୁ ଧୂଳରେ ଢଳ ଢଳ ॥ ୭ ॥

[ ଲଳିତ କାମୋଦୀ— ଅଠତାଳ ]

ବୀଣା—

## —ତୁମରି ସାଜ—

ହେ ବିଶ୍ୱ-ରଞ୍ଜନ, ଏ ମହା ଭୁବନ
ପୂର୍ଣ୍ଣ ତୁମରି ସାଜ ହେ,
ନିର୍ମଳ ଉଦ୍ଭ ଶିଶୁ-ଜନ-ପ୍ରେମ—
ହୃଦୟାସନେ ରାଜ ହେ ॥
ରବି, ଶଶୀ, ତାରା
ଗଗନ-ପସରା
ରଚନ୍ତି କାହାରି କାର୍ଯ୍ୟେ ହେ,
ତୁମରି ମୂରତି ମଙ୍ଗଳ-ଆରତି
ଭୁବନେ ଭୁବନେ ବାଜେ ହେ —୧—
ଫୁଲ୍ଲ ତରୁଲତା
ଫୁଟେ ଗୀତ-ସୁତା
ଝର ଝର ପରପାତେ ହେ,
କି ମୋହନ ଛନ୍ଦେ ତବ ନାମ ବନ୍ଦେ
ଗାଏ ହସି ସନ୍ଧ୍ୟା ପ୍ରାତେ ହେ —୨—
ତୁମରି ବିଭୂତି
ତୁମରି ରାଜୁତି
ବିଶ୍ୱ-ଜନ-ମନ ମାଝେ ହେ,
ତୁମରି ମଧୁର ମହିମାର ତେଜେ
ହୃଦ-ତମ ହରେ ଲାଜେ ହେ —୩—

[ ସ୍ୱର— ଯଖନ ସଘନ ଗଗନ ଗରଜେ ]

ଝାଣା —

—ଭଜନ—

ରାସ-ନଟବର ରସିଆ ନାଗର
ରସ-ଶଶଧର-ସୁନ୍ଦର ।
ନନ୍ଦ-କୁଟ-ଶୃଙ୍ଗ ବ୍ରଜ-ବଂଶୀ-ବଟ
ଯମୁନା-ତଟ-ମନୋହର [ ହେ ହରି ]

ପ୍ରେମର ସାଗର ପରମାନନ୍ଦ
ଅଗତ ଯୋଦର ହେ ଆନନ୍ଦକନ୍ଦ
ଗିରି-ଧର ରାଧା-
ମୋହନ ମୁକୁନ୍ଦ ବରଜ-ରାଜ-ପୁରନ୍ଦର । ୧ ।

ଗରବ-ଗଞ୍ଜନ ଭୟ-ଭଞ୍ଜନ
ତପୀ-ଜପୀଜନ-ନେତ୍ର-ରଞ୍ଜନ
ମଧୁ-କେଶୀ-କଂସ-
ବଂଶ-ନସୂଦନ ଦୁଷ୍ଟ-ଦମନ ଦାମୋଦର —୨—

ନନ୍ଦତ-ନକୁଞ୍ଜ-ନୃପଶେଖର
ଗୋପାଳକ ଗୋପ-ଧୂଳ-ଧୂସର
ଘର-ପର-ସର-
ନବନୀତ-ଚୋର କଲାକାହ୍ନୁ କଲା ଅସର —୩—

ନତ୍ୟ ନରଞ୍ଜନ ହେ ନର୍ବିକାର
କୋଟି ଗୁଣାକର ବିଶ୍ୱ-ଈଶ୍ୱର
ଅନନ୍ତ ଅବ୍ୟକ୍ତ
ପୂର୍ଣ୍ଣବ୍ରହ୍ମ ସତ୍ୟ-ତତ୍ତ୍ୱ-ସତତ୍ତ୍ୱ-ପୀତାମ୍ବର । ୪ ।

[ ସ୍ୱର— ବ୍ରଜ-ରାଜ-ସୁତ-ଫାନ୍ଦେ ପଡ଼ି ମିତ ]

## —ଆର୍ତ୍ତ-ଡ଼ାକ—

ହେ ଗୋବିନ୍ଦ,
ପ୍ରେମ-ପରମାନନ୍ଦ,
ଫେଡ଼ ମୋ ଆରତ ବିପଦ-ଛନ୍ଦ —୦—
ବୁଦ୍ଧି ମୋର ବଣା,
କପାଳ ପୋଡ଼ା,
ଚିନ୍ତା-ଦମ୍ଭେ ଦେହ
ହେଲାଣି ଗଢା;— ହେ ଗୋବିନ୍ଦ ୧—

ଦୁଃଖ ପରେ ଦୁଃଖ
ଦହେ ଅନ୍ତର,
ସହି ତ ଗଲାଣି
ପଖା-ପିଞ୍ଜର;— ହେ ଗୋବିନ୍ଦ ୨—

ମାୟାରେ ମୁଁ ବାୟା,
ବଡ଼ ଅଜ୍ଞାନ,
ପାସୋରିଲି ତବ
ନାମ-ଭଜନ;— ହେଗୋବିନ୍ଦ ୩—

ଲଭି ତବ-ସ୍ନେହ,
ଶ୍ରୀପଦ-ଛାୟା,
ସୁଖେ ସତ୍ୟ ତେଜୁ
ଏ ହୀନ-କାୟା;— ହେ ଗୋବିନ୍ଦ ୪—

[ ସ୍ୱର—ଝିଁଗଡ଼ି ମାଣ୍ଡ ହେଲି ହେ ଶ୍ୟାମ ]

ଝାମ୍ପା—

## —ଗାଅ ହେ—

ଗାଅ ହେ ଗାଅ
ଆନନ୍ଦେ ବନ୍ଧୁ—
ପରମାନନ୍ଦ-ସଙ୍ଗୀତ;
ପୂଜ ହେ ନିତ୍ୟ
ଗୁରୁ-ଗୋବିନ୍ଦ
ହୃଦ-ଆଦର ସହିତ । ୦ ।

ମଜ୍ଜ ହେ ପ୍ରଭୁ
ପଜ ସରସ
ସରୋଜ-ପଦେ ସତତ,
ବୃଥା-ଗଳପ
ମିଥ୍ୟା-ଆଲାପ
ଚିନ୍ତାରୁ ହୁଅ ବିରତ ୧—

ବିଶ୍ୱ-ବନ୍ଦନ
ନିତ୍ୟ-ନିରଞ୍ଜନ
ସତ୍ୟ, ଅଚ୍ୟୁତ, ଅନନ୍ତ
ପରମ-ପିତା
କରମ ଦାତା
ପ୍ରେମ-କରତା ସେଇତ ୨—

[ ସ୍ୱର—କ ଯୋଗେ ସେହି ରମଣୀବର ନୟନେ ମୋର ପଡ଼ିଲା ]

## —ନାମ-ରସ—

ହରିନାମ-ରସ-
ପୀରତ-ପୀୟୂଷ
ପିଅରେ ପ୍ରମୋଦ ମନ
ବୋଲ— ବଂଶୀ-ବଦନ
ମଦନ-ମୋହନ
ମଧୁସୂଦନ—କୀର୍ତ୍ତନ —୦—
ଭଜ— ଭକତ-ରଞ୍ଜନ ନିତ୍ୟ ନିରଞ୍ଜନ
ଆରତ-ଜୀବ-ଜୀବନ
ଜପ— ହରେ କୃଷ୍ଣ ହରେ ମହାନନ୍ଦ ଭରେ
ପୂର୍ଣ୍ଣବ୍ରହ୍ମ ସନାତନ —୧—
[ ଗାଅ— ଗଉର୍ ନିତାଇ, ଜୟ ଗୋବିନ୍ଦ କହାଇ ]
ଗାଅ— ଗଉର୍ ନିତାଇ ଗୋବିନ୍ଦ କହାଇ
ଅନନ୍ତ ମଧୁର ନାମ
ସେଇ— ଶ୍ରୀକୃଷ୍ଣ ନିମାଇ ଜଗାଇ ମାଧାଇ
ପାପୀକୁଳ୍ୟ ଉଦ୍ଧାରଣ —୨—
ବୋଲ— ଜୟ ରାଧେଶ୍ୟାମ ଜୟ ରାଧେଶ୍ୟାମ
ହରେ ନାମ ପ୍ରେମ-ଗାନ
ସେଇ— ହରେର୍ନାମ-ଧନ ସତ୍ୟ-ପାନ-ସ୍ନାନ
ଭକ୍ତ ମାଗେ ଅନୁଦିନ — ୩—

[ ସ୍ୱର— ନାରୂପନ୍ତେଶରାମ ମଧୁର ମୂରତ ]

ଖାଣା—

## —ବିଶ୍ୱ-ମୋହନ—

ସଂପଦ-କାରଣ ବିପଦ-ବାରଣ
ଭକ୍ତ-ହୃଦ-ପ୍ରେମ-ନିକେତନ
ଅଘ-ତାରଣ ପ୍ରଭୁ ପରଂବ୍ରହ୍ମ
ନିତ୍ୟ ନିର୍ବିକାର ନିରଞ୍ଜନ;—ବିଶ୍ୱ-ମୋହନ ହେ
ଦୀନ-ଜନ-ଆରତଭଞ୍ଜନ ॥ ୦ ॥

କାମିନୀ-କାଞ୍ଚନେ ଜଡ଼ ପ୍ରଲୋଭନେ
ନିମିଷେ ନାହିଁ ମୋ ସ୍ଥିର ମନ
ପାପ-ପଙ୍କେ ପଡ଼ି, ହତା ହତ ହୃଡ଼
ଭୁଲିଛି ହେ ତବ ନାମ-ଗାନ;—ବିଶ୍ୱ-ମୋହନ ହେ
ଦିଅ ମୋତେ ଦିବ୍ୟ ପୁଣ୍ୟ-ଜ୍ଞାନ;—୧—

କଷ୍ଟୁ ନୁହେ ଊଣା, ପେଟ-କଣ୍ଟକଣା
ଭାଲୁ ଭାଲୁ ବୁଦ୍ଧି ହୁଏ ବଣା
ଚିନ୍ତା-ଅନଶନ ଦେହ କରେ ଚୂର୍ଣ୍ଣ
ବେଳୁଁ ବେଳ ବଳ ହୁଏ କ୍ଷୀଣ;—ବିଶ୍ୱ-ମୋହନ ହେ
ନ ଶୁଣ କପାଁ ମୋ ନିବେଦନ;—୨—

ଗୁପତ ବେଦନା ଅନିତ୍ୟ ବାସନା
ଦ୍ୱିଗୁଣିତ ହୁଏ ଦିନୁ ଦିନ
ଲଭି ନିତ୍ୟ ଧନ ସତ୍ୟର ଜୀବନ
ସାର୍ଥ ହେଉ-ବିଭୁ ଦୟାବାନ;— ବିଶ୍ୱ ମୋହନ ହେ
ଚରଣାମ୍ବୁଜେ ରଖ ଶରଣ;—୩—

[ ସ୍ୱର—କାଲିଆ କମଳ ଦେଖିଲେ କମଳ ]

ସ୍ଥାଣା—

## —ଭିକ୍ଷା—

ଦୟା-ସାଗର ହରି ହେ ଗୋବିନ୍ଦ
ଗିରିଧାରି ମୋହନ ମୁକୁନ୍ଦ —

ଶ୍ୟାମସୁନ୍ଦର ପରମାନନ୍ଦ
ବ୍ରଜ-ରାଜ ବୃନ୍ଦାବନ-ଚନ୍ଦ୍ର

ରାଧା-ହୃଦ-ଶରଦ-କୁମୁଦ
ଗିରିଧାରି ମୋହନ ମୁକୁନ୍ଦ—୧—

ପାପ-ପଙ୍କେ ପଡ଼ି ଅବିରତ
ସଢ଼ିଗଲି ମୁଁ ହେ ଗୋପୀନାଥ

ରଖ ରଖ ମୋତେ ଆହେ କନ୍ଦ
ଗିରିଧାରି ମୋହନ ମୁକୁନ୍ଦ—୨—

ପ୍ରେମମୟ ଅନନ୍ତ ଅବ୍ୟକ୍ତ
ନବ ନବ ଲୀଳା ତବ ନିତ୍ୟ

ହେଉ ଲୁଚୁ ମୋ ଭଗାରି ମନ୍ଦ
ଗିରିଧାରି ମୋହନ ମୁକୁନ୍ଦ—୩—

ଚନ୍ଦ୍ରାନନେ ବୁଡ଼ ସନ୍ଧ୍ୟାବାଦୀ
ଅଶ୍ରୁ ମାଗୁଛି ହେ କ୍ଷମାନିଧି

ତବ ଅଭୟ ଚରଣ-ଛନ୍ଦ
ଗିରିଧାରି ମୋହନ ମୁକୁନ୍ଦ—୪—

[ ସ୍ୱର— ଭଜ ରାଧାରମଣ ଗୋବିନ୍ଦ ]

ଘଣା—



ଭଜ ଗୋବିନ୍ଦ,
ସୁନ୍ଦର ଗୋବିନ୍ଦ,
ଭଜ ଭଜରେ,

ଯେ ଜନ ଗୋବିନ୍ଦ ଭଜେ
ସେଇ ମୋର ପ୍ରାଣରେ —○—

[ ୧ ]
ମୁକୁନ୍ଦ ମଧୁସୂଦନ
ରାଧା-ପ୍ରାଣ-ଧନ ରେ

[ ୨ ]
ମାଧବ ପରମାନନ୍ଦ
ବୃନ୍ଦାବନ-ସ୍ୱଣରେ

[ ୩ ]
( କର ) ଗୋବିନ୍ଦ ଗୋବିନ୍ଦ ନାମ
ପ୍ରେମାମୃତ ପାନରେ

[ ୪ ]
ଗୋବିନ୍ଦ ପଦ-କମଳେ
ମିଶୁ ମନ-ପ୍ରାଣରେ

[ ସ୍ୱର— ଭଜ ଗୌରାଙ୍ଗ ସୁନ୍ଦର ଗୌରାଙ୍ଗ ]

## —ଲାଳସା—

ସେ ଘନ-କାଳିଆ   କାଉଁଚ-ମାଳିଆ
ରସିକ-ରାଜ ରାସ-ରସାଳିଆ,
ମୁରଲୀ-ବଜାଳିଆ   ଭ୍ରୂଭଙ୍ଗୀ-ଚଞ୍ଚଳିଆ
ନିକୁଞ୍ଜ-କେଳିବନ-ବୁଲାଳିଆ —୦—

[୧] ଭକତ-ରଙ୍କାଳିଆ   ନୟନ-ବଙ୍କାଳିଆ
ସତୀ-ଭୁଲ-ଅକଠ-କଠାଳିଆ,
ଗୋଧନ-ଜଗାଳିଆ   ବରଜ-ଜଞ୍ଜାଳିଆ
ନୀପ-ମୂଳିଆ ଗୋପ-ଗୋପାଳିଆ । [ ଗୋସଖି ]

[୨] ବନ-ଫୁଲ-ଡାଳିଆ   ରତନ-କୁଣ୍ଡଳିଆ
ଚନ୍ଦନ-ଗୁରୁ-ଅଙ୍ଗ-ପଠାଳିଆ,
ଶିଖି-ପୁଚ୍ଛ-ଚୂଳିଆ   କାମକଳା-ଠୁଳିଆ
ମୋହନ-ରୂପ କେଡ଼େ ଛଟାଳିଆ । [ଗୋସଖି]

[୩] କଳନ୍ଦଜା-କୂଳିଆ   ଗୋବର୍ଦ୍ଧନ-ତୋଳିଆ
ଗୋପୀଜନ-ଜୀବନ-ସମ୍ବାଳିଆ,
ପୁରନ୍ଦର-ଗୃଳିଆ   ବିଷଧର-ଦଳିଆ
ନନ୍ଦ-ହୃଦୟାନନ୍ଦ-ହୁଲାଳିଆ । [ ଗୋସଖି ]

[୪] ଦୁଷ୍ଟ-ଦର୍ପ-ଜାଳିଆ   ବ୍ରଜ-ରଜ-ବୋଳିଆ
ତ୍ରିଭଙ୍ଗି-ପଦାମ୍ବୁଜ-ଛନ୍ଦାଳିଆ,
ଜଗଜ୍ଜନ-ପାଳିଆ   ପ୍ରେମାମୃତ-ଶାଳିଆ
ସତ୍ୟବାଦୀ-ସୁହୃଦ-ସଙ୍ଗାଳିଆ । [ ଗୋସଖି ]

[ ସ୍ୱର:— ବାନ୍ଧବ କିସ ଭାଳ ନଇଲେ ବନମାଳୀ ]

ଘାଣା—

## —ଯମୁନା-ତୀରେ—

ମଦନ-ମୋହନ-ବଦନ-ସୁଧା ଚାଖିଲୁ କି, ଗୋ
ବାଙ୍କ-ନୟନ-ଚାହାଣି-ଛଟା ଶିଖିଲୁ କି, ଗୋ—

୧— ବ୍ରଜ-ରସିକ-ରାଜ-ସଜ ସାଜିଲୁ କି, ଗୋ
ମୋହନ-ମୁରଲୀ-ମଧୁର-ସ୍ୱନେ ମଜ୍ଜିଲୁ କି, ଗୋ

୨— କୁଞ୍ଜ-କୁଟୀରେ ନୀଡ଼ ଥରେ ଗଢ଼ିଲୁ କି, ଗୋ
ହୃଦୟ-ଅଧୀରେ ଯମୁନା-ନୀରେ ବୁଡ଼ିଲୁ କି, ଗୋ

୩— ପ୍ରେମ-ଅମଳେ ଅଙ୍ଗେ ଅଙ୍ଗ ଭିଡ଼ିଲୁ କି, ଗୋ
ନରମ ରୁଚିରେ ସରମ ଡର ଛାଡ଼ିଲୁ କି, ଗୋ

୪— ପ୍ରାଣ-ପିଞ୍ଜରେ ସ୍ନେହ-ଶୁଆ ପୋଷିଲୁ କି, ଗୋ
ପରାଣ ପରଶି ପରମ-ପଦେ ରସିଲୁ କି, ଗୋ

୫— ଶ୍ୟାମ-ହରଦେ ଥରକୁ ଥର ଥରିଲୁ କି, ଗୋ
ପୀରତି-ବଜାରେ କୀରତି-ହେର ହୋଇଲୁ କି, ଗୋ

୬— ପଦାଶ୍ରୟେ ସେ ସତ୍ୟବାଦୀ
ପାଇଲୁ କି, ଗୋ
କଦମ୍ବ-ମୂଳଅ-କାଳଅ ପ୍ରୀତି
ଭାଳିଲୁ କି, ଗୋ

[ ତାଳ— ଖେମଟା ]

## —ଯାଏ ଝଲସି—

[ ଅଗୋ ସଖି ]
ନିମିଷେ ଯାଏ ଝଲସି

ନେତ୍ର-ପ୍ରାନ୍ତରେ କି ବିଚଷଣରେ
ମନ୍ତ୍ର-ସୂତ୍ରରେ କି ସେ ବଂଶୀ—

—[ ୧ ]—

ତ୍ରିଭଙ୍ଗିମରୂପ କେତେ ଯତନ
ଅମଳ କମଳ କଳା ବଦନ
ସୁଧା-ସରସର
ସୁରଙ୍ଗ ଅଧର ସୁହାସ, ବିକଶି—

—[ ୨ ]—

ମନ୍ଦ ପବନେ କି ଉଡ଼ୁଛି ହଳି
ବସନ ଭୂଷଣ ଅଙ୍ଗ ଦୋହଳି
ସରସ ଗମନ
ପରଶ-ରତନ ପରଶି ପରଶି—

—[ ୩ ]—

ନୟନ-କୋଣେ କି ଅୟନେ ଠାର
ଫେରଗଲ୍ଲ ପଥ ନୁହଇ ବାଟ
ପ୍ରେମମୟୀ ଠାଣି
ମନ ନାଏ କ୍ଷଣି ଧଇର୍ଯ୍ୟ ଧରଷି—

—[ ୪ ]—

ସତ୍ୟବାଦୀ ଭାବେ ଭକତଭରରେ
କହେ ବାଏ ବଂଶୀ ସପତ ସ୍ୱରେ
ଥରେ ଥରେ ନୀପ—
ପାଦପ-ତଳପ ଅଳସ ଝଲସି—

[ ରାଗ— କାମୋଦ—ତାଳ ରୂପକ ]

ଝିଣା—

# କାହିଁ ନାହିଁ—

ଏକା ସେ
ବ୍ରଜ-ମୋହନ
ମୋ ଜୀବ-ଜୀବନ
କାହିଁ ନାହିଁ ଅଉ ମୋ ମନ —ଘୋ—

ସେ ସୁଧା-ମୁରଲୀ-ମୁଖ
ମୋ ପରାଣ ପ୍ରୀତି-ସୁଖ
ଦେଖି ପାସୋରିବ ଦୁଃଖ ସାରା ଜୀବନ—୧—

ସେ ମୃଦୁ ମଧୁର ବାଣୀ
ବାଙ୍କ-ନୟନ-ଚାହାଣି
ସରଳା ସରମ-ଠାଣି କରେ ଉଚ୍ଛନ୍ନ—୨—

ନବ-ନୀଳ ରୂପ-ଶୋଭା
ବନ-ମାଳ-ବେଶ-ଲୋଭା
ଜାମ-ଡାଳ-ଚୂଳ-ଗଭା କେଡ଼େ ଯତନ—୩—

ନିତି ନିକୁଞ୍ଜ କାନନେ
ସେ ବଂଶୀ-ମଧୁର-ସ୍ୱନେ
କାଳ-ମନମଥ ହୁଏ କେତେ କଦନ—୪—

ଅନୁସରି ସତ୍ୟବାଦୀ
ସେ ବ୍ରଜ-ନୟନ-ନିଧି
କମଳ-ପଦ-ଯୁଗଳ କରେ ଅର୍ଚ୍ଚନ—୫—

[ ସ୍ୱର— ମଞ୍ଜିରେ ମହୁଲା ଏଡ଼େ ହୀନ-କରମେ ]

# —ପୀରତି-କାମନା—

କାହ୍ନିଁକ ଲୋ ଡରୁ ଶ୍ୟାମ-ନାଁ—

ଯେବେ କର ଅଛୁ ତାଙ୍କ
ପୀରତି-କାମନା
ଦୂର ହେବ ତୋ ବିରହ
ନ ହୁଅ ବିମନା——୧

ଆସିଲେ ସେ ତୋ ପାଶକୁ
ଭୟରେ ଥରନା;
ଭେଟିବୁ ଚନ୍ଦନ ପାନ
ସୁମନେ ସୁମନା——୨

ଧରିଲେ ତୋ କର ପ୍ରେମେ
ସେ କାଳିଆ ସୁନା
ଲାଜ ପଡ଼ି ବିରାଗରେ
ନ କରିବୁ ମନା——୩

ରସର ନାଗର ସେ ଗୋ
ଅପର କଳନା,
ପ୍ରେମ-ଚିନ୍ତାମଣି ତାଙ୍କ
ଲଳନା ପାଳନା——୪

ଭକ୍ତି-ଅନୁରାଗେ ରଚି
ସେ ପଦ-ଅର୍ଚ୍ଚନା
ଅନୁଦିନ ସତ୍ୟବାଦୀ
ଅନୁସରେ ସିନା——୫

[ ସ୍ୱର— ବାଜୁଛି ଗୋ ମୋହନ ବଂଶୀ ]

ଵୀଣା—

## —କାହିଁ ଅଛ ?—

କାହୁଁ ଅଛ ବନ୍ଧୁ
ଦୀନ-ଦୟା-ସିନ୍ଧୁ
ଦୁଃଖିନୀ-ହୃଦୟାନନ୍ଦ-ଇନ୍ଦୁ

ଖୋଜି ଖୋଜି କେତେ
ବନସ୍ତେ ବନସ୍ତେ
ଖୋଜୁଁ ଶ୍ରୀପଦ-ସଂକେତ-ବିନ୍ଦୁ
ଅହେ ପ୍ରାଣ-ବନ୍ଧୁ
ଦୁଃଖିନୀ-ହୃଦୟାନନ୍ଦ-ଇନ୍ଦୁ

—[ ୧ ]—

ପରାଣ ପ୍ରେମିକା
ପ୍ରେମ-ଆରାଧିକା
ରାଧିକା କି ହେ ନ ପଡ଼େ ମନେ

ହସ ମଣି କୁଞ୍ଜେ
ଲୁଚିଛ ହେ ଯେବେ
ବାଅ କପା ବଂଶୀ ଡାକ ସ୍ୱନେ

ଘନ-ସୁନ୍ଦର ହେ
ଛାଣ କେତେ ଛନ୍ଦ ସୁନ୍ଦର ହେ

—[ ୨ ]—

[ ସ୍ୱର— ଶ୍ରୀରାଧା ବାଭୁଲୀ ପ୍ରେମରସାଭୁଳ ]

## —ଆସିବେ କି—

ଲଳିତା— ଆସିବେ କି ବନମାଳୀ ସ୍ନେହର ସଙ୍ଗାଳ
ଗୁନ୍ଥିଛି କେଡ଼େ ଯତନେ ବାସ ପୁଷ୍ପମାଳ
ବାଛି ବାଛି ବାସ ଚମ୍ପା ନାଗେଶ୍ୱର
ଗୋଲାପ ତଗର ଗୋ ସଜ ସର ସର
ଝୁମ୍ପା ମଝିରେ ମୋହର ମିଶିଛି କଅଁଳୀ୧—

ଶ୍ରୀରାଧା— ଦେଖ ଲୋ କେଡ଼େ ସୁନ୍ଦର ଦେଖ ଲୋ ମୋ ଆଳି
ଦିଶୁଛି କି ଏଡ଼େ ତୋରି ତୋର ଗୁନ୍ଥାମାଳ
ଜାଈ ଯୂଈ ମଲ୍ଲି ମାଧବୀ ମାଳତୀ
କୁନ୍ଦ କୁଈଅନା ସୁମନା ସେବତୀ
ଥୋଇଛି ମୁଁ ସଜାଡ଼ି ଗୋ ନବ ଅର୍ଘ୍ୟଥାଳୀ୨—

ବୃନ୍ଦା— ସତ ସତ ତୋର ରାଧେ, ନୁହନ୍ତୁ ତୋ ଆଳି
ପ୍ରେମ-ଧନେ ଛନ ଛନ ମନେ ଭାଳି ଭାଳି
[ ମୁଁ ଯେ ] କେତକୀ-ପାଖୁଡ଼ାରେ ବନ-ଫୁଲ-ଝରା
ଖୋସିଛି ଧାଡ଼ି କି ଧାଡ଼ି କେରାକୁ ଗୋ କେରା
ଗୁନ୍ଥିଁ ଥିବୁ ସତେ ପରା ଆଖି ଢ଼ାଳି ଢ଼ାଳି୩—

ବିଶାଖା— ଥାଅ ଗୋ ରାଧିକେ ବନ୍ଧୁ-ବିରହ ସମ୍ଭାଳି
ଯୁଗଳ-ମିଳନେ ଆଜ ପିନ୍ଧିବେ ତୋ ମାଳ
[ ସେତ ] ନାଚୁଁଥି ନବ କିଶୋର ନୀଳମଣି
ଧ୍ୟାନ-ଜ୍ଞାନ-ସତ୍ୟ-ତତ୍ତ୍ୱ-ଚିନ୍ତାମଣି
ଶୁଭୁଛି କୁଞ୍ଜ-ଦୋଳରେ ବଂଶୀ କରତାଳି୪—

[ ସ୍ୱର— ଦେଇ ସହୁ କୁଳକୁ ଗୋ ଟେକି ଜଳାଞ୍ଜଳି ]

ଗୀତ।—

—ଶୁଭୁଛି—

ବାଜୁଛି ଗୋ
ମୋହନ ବଂଶୀ
(ଶୁଭୁଛି) ସତେ କି ସପତ ସ୍ୱରେ
'ରାଧେ ରାଧେ' ଘୋଷି —୦—

୧

କି ସୁନ୍ଦର ହସେ ଆହା
ଏ ଶରଦ-ଶଶୀ
ବହୁଛି ବନ-ପବନ
ପୀୟୂଷ ପରଶି——

୨

ମଧୁ-ମନେ ମଧୁପାନେ
ମଧୁପ ଭରସି
ମତାଏ ମଧୁ-ମାଦକେ
ଫୁଲେ ଫୁଲେ ବସି——

୩

ଶିଖଣ୍ଡ-ଚୂଳଥ ସେହି
କେଡ଼େ ଲୋ ସାହସୀ
ହାତୀ ପରୁ ଛଡ଼ ଡେର
ବୁଲେ ବନେ ପକ୍ଷୀ——

[ ସ୍ୱର— କାହିଁ କି ଲୋ ଡରୁ ଶ୍ୟାମ ନାଁ ]

## —ମଧୁ-ଯାମିନୀ—

ଅହାହା-ହା—

ଏକି ମଧୁ-ଯାମିନୀର ଶୋଭା ଦେଖ ଲୋ ସହି
କି-ରଙ୍ଗେ ନାଚୁଛି ନିଶୀଥିନୀ ଆହା ପ୍ରେମି ଜନ-ମନ-ମୋ'ହି—
କୋଟି କୋଟି ତାରା ନୟନ ତରନ୍ତି
ଚାହିଁଛନ୍ତି ସେହି ପ୍ରେମ ମୂରତି
କୁମୁଦିନୀ-ରାଣୀ-ସ୍ନେହ-ପସରନ୍ତି ଜୀବନ-ସଞ୍ଚାଳ ସେ'ହି ॥ ୧
ବରଷୁଛି ସୁଧା ଧାର ଧାର ଧାର
ଥରୁଛି ହୃଦୟ ଥର ଥର ଥର
ବହୁଛି ସମୀର ମର ମର ମର ପାଟଳ-ପଲ୍ଲବ ଦେ'ଇ ॥ ୨
କି ସୁନ୍ଦର ଦିଶେ ଫୁଲ-ଉପବନ
ଫୁଲେ ଫୁଲେ ବୁଲେ ଅଳି ଘନ ଘନ
କି ଭାବନ୍ତି ଦିଏ ପିକ-କଣ୍ଠ-ତାନ ବିରହୀ-ପରାଣ ନେ'ଇ ॥ ୩
ଧରା-ରାଣୀ ଧରୁ ମଣି-ମୋତି-ଥାଳୀ
ଦିଗ-ବଧୂ-ସଙ୍ଗେ ଦିଏ ହୁଳହୁଳି
ବନ-ଦେବୀ-ମୁଖେ ବାଜୁଛି କାହାଳୀ ମଧୁ-ମଧୁରିମା କ'ହି ॥ ୪
ଏ ମଧୁ-ଉତ୍ସବେ ପ୍ରେମାନନ୍ଦେ ମିଳି
ବ୍ରଜେ କୁଞ୍ଜେ ଧନ୍ୟ ରାଧା-ବନମାଳୀ
ଏ ଯୁଗଳ ରୂପ ମନେ ଭାଳି ଭାଳି ଜୀବ ଯିବ କି ଲୋ ସ'ହି ॥ ୫
ଗାଅ ଟିକେ ସଙ୍ଗୀତ ନାଚ ବାହୁ ଟେକି
ଭାବେ ଢଳ ଢଳ ଦିଅ କରତାଳି
ଢୋଳ ରାସ-ଧୂଳି ଶିରେ ଶିରେ ବୋଳି ଏ ଦିନ ଯାଉ ଲୋ ବହି ॥ ୬
[ ସ୍ୱର— ଗାଇଲେ ରାଧିକା ଲଳିତା ବିଶାଖା ସବୁ ଗୋପୀଗଣ ମିଳି ]

## —ଝୁରି ଝୁରି ମରିବି—

ସହି——

ଝୁରି ଝୁରି ମରିବି

ସେହି——

ମୁରଲୀ-ଧାରୀକି [ —ଧ୍ରୁ— ]

ନିତି ନିଶିରେ ନୀଳ ନାଗର

ଜଗି ବସି ରହି ଉଜାଗର

କେତେ ପ୍ରୀତି ଆଶା କରିବି

ସେହି——ମୁରଲୀ-ଧାରୀକି —[ ୧ ]—

ମୁଁ ଯେ ଦେଇଛି ଜୀବନ ଟେକି

ଆଉ ଆନ ଉପାୟ ଅଛି କି

ଏବେ ମୁରୁଛି ନ ପାରିବି

ସେହି——ମୁରଲୀ-ଧାରୀକି —[ ୨ ]—

ଦେଖିବି ବୋଲି କରି ଭରସା

ଦେବି ଖୋଜିଲେ ଭଗାରି-ଦସା

ସବୁ କଥାରେ ତ ଡ଼ରିବି

ସେହି——ମୁରଲୀ-ଧାରୀକି —[ ୩ ]—

ଭାବେ ପ୍ରୀତି ମନେ ସତ୍ୟବାଦୀ

ସେହି ପରି ବୃନ୍ଦାବନ-ନିଧି

ଭାଗ୍ୟ-ବଳେ କି ମୁଁ ବଞ୍ଚିବି

ସେହି——ମୁରଲୀ-ଧାରୀକି —[ ୪ ]—

[ ରାଗ— ହିନ୍ଦୁସ୍ଥାନୀ କାଫି—ତାଳ ଆଦି ]

## —ମନୁ ଯିବକି ?—

ବନ-ମାଳଆଛି

ଘନ-କାଳଆଛି

ନୀପ-ମୂଳଆଛି

ଫୁଲ-ଚୂଳଆଛି

ମନୁ ଯିବ କି ତୋ

ଅନୁସରଚୁ ଗୋ

ଅନୁଦିନ

ଅନୁକୂଳଆଛି —ରାଧେ—

ଚତ୍ର ଗୋଷ୍ଠ ଯାକ "ରାଧେ ରାଧେ" ତାର

ଚଢ଼ା ପଡୁଅଛି ମୁରଲୀରୁ ସାର

ପ୍ରେମର ପସରା ତୋ ହୃଦୟ-ଦ୍ୱାର୍ ସୁଧା-ସଂପଦ-ସଙ୍କୁଳଆଛି—ରାଧେ୧

ପ୍ରଭାତ-କୁସୁମେ ଗୁନ୍ଥି ଫୁଲ-ହାର

ସଜାଡ଼ ବସ ଗୋ କେତେ ଉପହାର

ଗୁପତରେ କରୁ ଏତେ ଉପଚାର ପର-ପୀରତି-ଅକୁଳଆଛି—ରାଧେ୨

ଝର ଝର ଧାର ବହେ ତୋ ନୟନୁଁ

ନଳିନ-ଆନନ-ମଳିନ-ବଚନୁ

ଜଣା ପଡୁଛିଟି ତୋ ମନ କଥାଟି ଭାଳୁ ପିନା ଭାବ-ଭୋଳଆଛି—ରାଧେ୩

ସେହି ସ୍ନେହେ ବନ୍ଧା ସଦା ସତ୍ୟବାଦୀ

ବୃନ୍ଦାବନେ ନୀପ-ନିକୁଞ୍ଜ ସଂପାଦି

ଏ ପାପ ଜୀବନେ ଭଜିବଟି ଯଦି ସାଦା ହେବେ ଗିରିତୋଳଆଛି—ରାଧେ୪

[ ରାଗ— ହିନ୍ଦୁସ୍ଥାନୀ-ଭୈରବୀ, ତାଳ—ଝୁମ୍ପା [

ବୀଣା—

## —ମିଳନେ—

ଶୋଭି
        ଦେଖ ଲୋ
            ସହି,
            କୁଞ୍ଜେ
            ମଦନ-ମୋହନ
ମଧୁସୂଦନ
    ହରି—
ବ୍ରଜେଶ୍ୱରୀ-ପ୍ରାଣ-ଧନ    —ଧ୍ରୁ—

ଛଳ ଛଳ ମଞ୍ଜୁଳ
କୋମଳ-ଶତଦଳ—
ଚଞ୍ଚଳ-ଚମକ-ନୟନ
ମନୋହର ସୁମଧୁର—
ହାସ ସୁଧା-ଅଧର
ମୋହନ ମୁରଲୀ ବଦନ

ନୀଳ ରତନ ଘନ-ବରନ ବୃନ୍ଦାବନ—
    ରାସ-ବିନୋଦନ——

[ ରାଗ—ବେହାଗ, ତାଳ—ଅଦ୍ଧ ]

ଖଣ୍ଡା।—

## —ବସିଛି ଗୃହିଁ—

ସୁମନେ !——

କହ ଗୋ,

ଆଜ ଏ ମନେ ସତେ

ଆସିଛୁ ତୁହୁ

ମୁଁ ଯେ ପଗ୍ରଶା-ଧରେ

ଏ ପାପ କନ୍ଧରେ

ଧରି ସେ ପଥ ବସିଛି ଗୃହିଁ——

ଯେ ମୁକୁଳ-ଲତା-ଗାରେ

ରହିଛୁ ଗୋ ଧରୁ ଲୋଭେ

ଏ ଯେ ସମୀର-ଲହରୀ ବହୁଛି ଧୀରେ

ଧୀରେ ଗୋ କାହିଁ ଦେବ ଅସ୍ତର ।——

ଯେ ଅମୃତ-ଅଧର ପାତେ

ମୋ ମନ ଦେଇଛି ସାର

ବୃନ୍ତ ବୃନ୍ତ ବୋଲ ଭୃଙ୍ଗ-ଲତିକା-ମୂଳେ

ଡାକୁଛି ପିକ ଛନ୍ଦେ କପାଳେ ।——

ମଧୁମନୁ ବାନ୍ଧୁଛି କେତେ

ଝରନ ବନ୍ଧା ଗୋ ଯନ୍ତ୍ର

ଏ ଯେ ଗଗନର ତାରୁ ନୟନ ଝୁଏ ମୁଁ।

ଯେ ଧରେ ଅଶ୍ରି ଭଏ ପ୍ରେମର ——

[ ରାଗ—କେଦାର, ତାଳ—ଝୁଲ ]

ବୀଣା—

## —ବାଧେ କି ରାଧେ ?—

ଅଳି-ହୃଦୟ-

ଧନମାଳୀ

ବନମାଳ-ସଙ୍ଗେ

ଭୁଲି କଲୁ ସତେ ଅଳି——

ସେଦିନ ଆଗରୁ କୁଞ୍ଜରେ ରହି

ଶ୍ୟାମ-ସଙ୍ଗେ ହୋଇ କାନ-କୁହା-କୁହି

କି ମୋହିନୀ ରେ ଦେଲୁ ତାଙ୍କ ମନକୁ ମୋହି

ଚତୁର, ଚଖାଇ କି ପ୍ରୀତି-ସୁଧା-ଥାଳୀ—ବନମାଳ—୧

ନଟନାଗର ତୋରେ କପଟରେ ଝେଲ

ଚନ୍ଦ୍ରାବଳୀ-ଚତ୍ର ଦେଲେଣି ତ ଦଳ,

ସେନେହ-ସନ୍ତାପ ବେଳକୁ ବେଳ ବଳ

ବାଧେ କି ରାଧେ କହ କାହ୍ନୁ କସ ଭାଳ—ବନମାଳ—୨

ପ୍ରୀତି-ଉପହାର-ମାଳା ଗୁନ୍ଥି ବସି

ଥରେ ଥରେ ଦେଉ ମନେ ମନେ ହସି

ଦେଇଛୁ କି ଗୋ ତାଙ୍କ ମନେ ମନକୁ କସି

କଲୁଣି ଜୀବନର ଜୀବନ-ସଙ୍ଖାଳୀ—ବନମାଳ—୩

ସେ ମନ-ମୋହନଙ୍କ ପ୍ରୀତି ଅନୁସରି

ଦିନ ରାତି ଝୁରି ଗଲୁଣିତ ସରି

କଳଙ୍କଭୂଷଣ ସତ୍ୟ ସେ ପଦକୁ ସୁମରି

ହୁଅଇ ପ୍ରେମମୟ-ପରାଣେ କଙ୍କାଳ—ବନମାଳି—୪

[ ସ୍ୱର—ବ୍ରଜ-ରମଣୀ-ମଣି-ହୀରା ]

## —ନାହିଁ— ନାହିଁ —

ଟେକି ନଳାଞ୍ଜନ ଭୁଜ-ଅନ୍ତରୁ

ଦେଖ କାନ୍ତ ହଜ ନାହ୍ନକା ଲୋ

ଦେଖ କୁଞ୍ଜ-ବ୍ରଜ-ପୀଡଭ-ଶିଙ୍ଗରେ

ଚିର ଯୋଷା-ବନ୍ଧ ଖାଇକା ଲୋ (—ଘୋ—)

ହରେ-କୃଷ୍ଣ ହରେ-ନାମ-ମନ୍ତ୍ର ପଢ଼ି

କାଳ ସେ ପଦକୁ ଜୀବକା ଲୋ

ସେବକ ସବାଗେ ସେ କାମ-ମୋହନ

କାମେଶ୍ୱର ମୋଦ-ବର୍ଦ୍ଧା ଲୋ——୧

· ସେ କଳା-ରୂପକୁ ଶୁଣି ଦେଇ ଦନେ

ଗଳା ଢୋଇ ସହୁ ଡାଠକା ଲୋ

ଦେଲେ ଭାଳ ଥରେ ମୁରଲୀ-ନାଦରେ

୨ —— 'ଆଜ ଆସ' ବୋଲି 'ରାଧିକା' ଲୋ

ଓଢ଼ଣା ଉଢ଼ାଲେ ଶୁହିଁ ମୁଁ ଟରଙ୍କେ

କହିଲି 'ନାହିଁ ନାହିଁ ଅରକା' ଲୋ

ଦୂରୁ ଅସି ଥାଇଁ ଯମୁନା-କୂଳରୁ

ଦେଖିଲେ ମୋର ପଥ ଅଟକା ଲୋ ——୩

ଛନ୍ଦ ଡ଼ଙ୍କେ ଭୁଜ ଶିରେ ଢ଼ାଳ ଶିର

ଚମ୍ପିଲେ ସେ କେତେ ଅଧିକା ଲୋ

କୋଟି ଶ୍ରୀ ଚରଣେ ଅନୁରାଗ ଭରେ

୪—— ସମ୍ପିଲି 'ମୁଁ ତବ ସେବିକା' ଲୋ

[ ସ୍ୱର—ମନା କରେ ଯେତେ ଲୁଲୁବ ହ ଯତେ ]

ୱାଣୀ—

## —ନାମ-ମଧୁ—

ଭଜ ଗୋ ବ୍ରଜ-ରାସ-ରାଜ

ନଟବର ବନ-ଗ୍ରାହୀ

ଶ୍ୟାମସୁନ୍ଦର ମୁରଲୀ-କର

ଗୋବର୍ଦ୍ଧନ-ଧାରୀ—ଘୋ—

——୧—

କୃଷ୍ଣ କେଶବ ଆନନ୍ଦକନ୍ଦ

ହରେ ଗୋବିନ୍ଦ ମୁରାରି

ଗୋକୁଳ-ଚନ୍ଦ୍ର ମଦନ-ମୋହନ

ଗୋପୀ-ମନୋହାରୀ—

—୨—

ଯଦୁ-ନନ୍ଦନ ବାସୁଦେବ

ବାମନ ଦଇତାରି

ମଧୁସୂଦନ ଭୟ-ଭଞ୍ଜନ

କୁଞ୍ଜ-ବନ-ବିହାରୀ

—୩—

ଜୟ ମାଧବ ଜଗତ-ଈଶ

ଭକତର ହୃଦ-ହାରୀ

ପୀତବସନ କାଳ-ସରପ—

ଦରପ-ଦଳନକାରୀ—

[ ସ୍ୱର— ଉସ ମାନସ ରାଧିକେଶ ]

## —ଅଭିମାନେ—

ନାହିଁ କର ଗୋ
　　ସହି,
　　　ଏଥର
　　　　କହି ଏ ଦ୍ୱରବର—ଧ୍ରୁବ—
　　　　　　ତାର ଅସଲଟ-ଲକ୍ଷ୍ମଟରେ ପଡ଼ି
　　　　　　ସବୁଗଲି ସହି ସଂକଟରେ ସଡ଼ି
　　　　　କୁଳ ଶୀଳ ଲାଜ ମହତକୁ ଏଡ଼ି
　　　　　କପାଳେ ଏବେ ମାରଇ କର —୧

　ଦେଲଣି ମୁକୁଳ କୁଟିଳ-କୁନ୍ତଳ
　ଗଲଣି ସକଳ ଆଶା ବେଳୁ ବେଳ
　　　ପୋଡ଼ିଲାଣି ସବୁ ସନ୍ତାପ-ଅନଳ
　　　　ଝୁରି ଝୁରି ସେହି ରସ-ସାଗର —୨
　　　ଯତନେ ରତନ ବସନ ଭୂଷଣ
　　　ସୁମନେ ଶୋଭନ କୁସୁମ ଚନ୍ଦନ
　　　　　ପ୍ରେମେ ଗୀତ ଗାନ କ୍ଷଣର ସମାନ
　　　　କଲେ ତ ମୋର ସେହି ସୁନ୍ଦର —୩

ସତ୍ୟ ସତ୍ୟବାଦୀ ଭାବନ୍ତି ମନେ
ନିତ୍ୟ ନିତ୍ୟ ତାର ତତ୍ତ୍ୱ-ଅନ୍ୱେଷଣେ
　　　ଅସୀମ ମହିମା ପୂର୍ଣ୍ଣ ସେ ବଦନେ
　　　　　ଢଏ ମୋହନ ବଂଶୀ-ମନ୍ତ୍ର —୪
　　　　　[ ରାଗ— ମିଶ୍ର ]

## —ହେର ଗୋ ରାଧେ—

ହେର ଗୋ—

ରାଧେ

ପ୍ରେମମୟି !

[ ହେର ]   ହେମ-ବରଣୀ ତବ ପ୍ରେମ ବନସ୍ଥୀ—ଧ୍ରୁ,—

ନଳନ-ନୟନୁଁ ନୀର-ଝର ବୁହାଇ

କାହିଁକ ଗୋ ରାଧେ ହୃଦେ ଚେତନା ନାହିଁ

କୃଷ୍ଣ-ପ୍ରାଣ, ପିଣ୍ଡ ସିନା ରାଧା କାହୁଁ କୃଷ୍ଣ ବିନା

ଜାଣନା ତ ତବ ବିନୁଁ କୃଷ୍ଣ ବିରହୀ—୧—

ଜପିରେ ଗୋ ଅସି କୁଞ୍ଜ-କୁଟୀରେ ରହି

ବସି ଦୁଃଖଭରା-ପ୍ରାଣେ ଭରସା ଦେଇ

ପୁଲକ-ପୂରଣ-ଅଙ୍ଗେ ମଧୁକର-ବଧୂ ସଙ୍ଗେ

ଘୁଣି ହେଉଥିଲେ ବନ ସରବ ନାହିଁ—୨—

ପ୍ରୀତିରେ ବିକଳୁ ଯାଇ ଜୀବନ ଭୁଲି

ଆନ ରୂପେ ଭୁଲିବୁ କି ଏ ଦେହ ଦେଇ

କହିବୁ ନାହିଁକି କ୍ଷମା ତୁ ଯେ ତାଙ୍କ ପ୍ରିୟତମା

ପୀୟୂଷ-ହାସ-ସୁଷମା ସଙ୍ଗେ ମିଶାଇ—୩—

ତା ଛବି ତୋ ଚିତ୍ତ-ପଟେ ଅଙ୍କିଛୁ ନେଇ

ତୋ ନାମ ସେ ବଂଶୀ-ତାନେ ଗାଏ ମିଶାଇ

ସୁଖ-ସ୍ୱପ୍ନେ ଜାଗି ବସି ତୋ ନାମ ସେ ଜପେ ଘୋଷି

ଭାବନା ତୁ ଭାବି ବସିଥିବୁ କି ରହି—୪—

[ ସ୍ୱର— ହିନ୍ଦୁସ୍ଥାନୀ ଭୈରବୀ,  ତାଳ— କଓ୍ୱାଲି ]

ବଣା—

## —ହସି ଗାଅ—

ହସି—

ପ୍ରେମ-ଗୀତ

ଗାଅ ରେ

ମହୁ

ହସି—

ପ୍ରେମ-ଗୀତ ଗାଅ— –

ହସି—

ସ୍ୱପ-ଭରେ

ମିଶି ଏ ଜଗତେ

ପରାଣ-ପୀୟୂଷ—ପାଅ—ଧ୍ରୁବ

ଅଧରେ ଅଧର ମିଶାଇ ମଧୁର—

ମୋହନ ବଂଶୀ ବାଅ

ହୃଦୟେ ହୃଦୟ ଯୋଖି ପ୍ରେମମୟ—

ରସ-ଜଳେ ଭାସିଯାଅ—୧

ବୋଲ ସ୍ୱପ୍ନ-ଧୂଳି ପ୍ରେମେ ବାନ୍ଧ ଡୋର

ଭଲ ଭୂଲ ନାଚି ଯାଅ

କ୍ଷଣେ ଗ୍ରହଣ ଧାଳେ ମଳ ଶୂଳ

ପ୍ରେମ-ରୂପ-ପାଣେ ଥାଅ—୨

ନାଚ ବୃନ୍ଦାବନ-କୁଞ୍ଜ-କୁଞ୍ଜବନ

ଜୀବନ-ବଂଶୀ ବଜାଅ

ନାହିଁ ଏ ଅବଧି, ପ୍ରେମ-ହିଲ୍ଲୋଳନ—

ଢେଉ-କୋଳେ ଖେଳ ଥାଅ——୩

ସ୍ୱର— ହମ୍ବୀର ଝିଞ୍ଜିଟ, ତାଳ-ରୂପକ ]

ଫଣା—

—ଜୟଜୟ—

—[ଜୟ]— ଜିଳଜଳ-ଗାଳ ଜଳଜ-ଦଳ-ଲୋଚନ,

ଜମ୍ବୁ-ଜଳଧି-ଜଳ-ନାଦା;

ଜୟ ଜୟ—

ଜମ୍ବୁ-ଜଳଧି-ଜଳ-ନାଦା—

ପାବନେ ଅବତର ଏ ମରତ-ମଣ୍ଡଳରେ

ହସ, ହକଣ୍ଠ ହସୁ ହା-ହା-?

—[ହାହା]—ହସ ହକଣ୍ଠ ହସୁ ହା—ହା

ଶୀତ-ଶରତ-ବସ-ମଳୟ-ସୁଚନ୍ଦନେ ମଧୁ ଫୁଲ-ନନ୍ଦନେ ଆ-ହା—

—[ଅହା]— ମଧୁ ଫୁଲ-ନନ୍ଦନେ ଆ—ହା—

ପୂର୍ତ୍ତି-ମଧୁର ବେଶେ ପ୍ରେମର ଆବେଶେ

ପୂର୍ଣ୍ଣ ବିମ୍ବ ହେ ତୁମେ—ବାହାବା

—[ବାହାବା]—ଜମ୍ବୁ-ଜଳଧି-ଜଳ-ନାଦା । ୧—

ବସୁନ୍ଧରା-କଣ୍ଠ ଶ୍ୟାମ-ବନାମ୍ବର ପ୍ରାଣ-ଭୂତ-ମଣି ମାଁ—ମାଁ;

—(ମାଁ ମାଁ]—ପ୍ରାଣ-ଭୂତ-ମଣି ମାଁ—ମାଁ,

ତୁମେ ବିଶ୍ୱମାତା, ତୁମେ ବିଶ୍ୱପାତା,

ଦେବ, ଗୁରୁ ହେ ତୁମେ, ବାହାବା,

—[ବାହବା]—ଜମ୍ବୁ-ଜଳଧି-ଜଳ-ନାଦା ।୨—

ଧନ୍ୱକୋଟ-ଧନ୍ୱ-ମୌଳି-ମଣ୍ଡନ ମଦନ-ମୋହନ ନରନାହା

—ସିଂହକୀର—ମଦନ-ମୋହନ ନରନାହା—! –

ନାମେ ତବାଶିଷେ ବିଶ୍ୱ ବିଭବ ଘୋଷେ

ବାଜୁ ବିଜୟ-ବାଜା ବାହାବା—

—[ବାହାବା]—ଜମ୍ବୁ-ଜଳଧି-ଜଳ-ନାଦା—୩—

[ସ୍ୱର—ସିନ୍ଧୁ—ଖମାଚ—ତାଳ—ଆଡ଼ ]

—ବିଚ୍ଛେଦେ—

ହିଣ୍ଡୁ ନୂତନ ଧଳସ୍ତ ସେ ଧ୍ୟାନ-ବନ୍ଧୁ—
ପ୍ରୀତ ଲଭି ଦେହ ବଦନ—ମ୍ରୁ––

ଯା ରୂପ-ସ୍ୱପ୍ନ
ମନରେ ମନାସି
ବହିଥିଲି ହୃଦି ଅନାଇଁ,
ପୀରତି ଲଗାଇ
ଜିତେ ନ ଏଠାର
ରହିଲେ ନା' ପ୍ରଭେ ଯାଇ [ଧ୍ୟାନ]––୧

ନା' ଅଗେ କହିବ
ବିରହ-ବେଦନା
ମରମେ ମରମେ ମରଇ,
ନ ହେବ ଅନ୍ତ ଏ
ଜୀବନ, ଯୌବନ
ନଇଟେ ଶପ୍ତଏ ନାଅଇ [ମୁଁ ସେ]—୨

ଏ ବିଗ୍ଧରେ ଫୁନ–
ଜଳଟେ ମୋ ପ୍ରାଣ
ଦୁଃଖିନୀ କେ' ଅବା ଜାଣି,
ଭବ ସର୍କି ସଦାସ୍ତୁ—
କେବେ ସେ ମୋହନ
ସ୍ୱପ୍ନ ହୃଦ୍ୟବାଣୀ କହିଲ [ଧ୍ୟାନ]—୩

[ସ୍ୱର—ବାର୍ଗି ସ୍ପେନ୍ଦ୍ର ଇସେଲି; ତାଲ— କର୍ତ୍ତାଳି]

ଗଣା —

—ଅନୁରାଗେ—

ବାଂଶୀ-ସ୍ୱରୋଦୟ

ତାଳ-ମାନ ଅଭ୍ରୁ

ପଥିକ ମନେ ଝୁରୁ
ଝୁରୁନାହିଁ ——ଧ୍ରୁ

—୧—

ଘନ-ବେଣୀ ବଶି ନବକୁଞ୍ଜ-ପ୍ରେୟସୀ ଶରତ-ଜ୍ୟୋଛେ ଦେଖି ହସୁନାହିଁ
ଅନ୍ତର ବସନ୍ତ ଅଙ୍ଗ-ଆବରଣ ଚଇତରେ କି ଓଢ଼ି ଖେଳୁନାହିଁ ।

—୨—

ଛନାଛନା ଛନ୍ଦେ ଥନଥନ-ଟ୍ରୋଳେ ଗହଳ ନେତ୍ରେ ଝୁରୁଁ ଝୁରୁଁନାହିଁ
ମନର ବେଦନା ମନର ବାସନା ଅଳପ ଥରେ କହୁ କହୁନାହିଁ ।

—୩—

କାଦମ୍ବର ଛାଏ ଅଦ୍ଭୁତ ମନ୍ଦ୍ରାସେ ଅନୁରାଗେ ସଜି ସଜୁନାହିଁ
ସୁକୁମାର-ଅଙ୍ଗ ସୁକୁମାର-ସଙ୍ଗ ଅନଙ୍ଗ-ରଙ୍ଗ ଖୋଜି ଖୋଜୁନାହିଁ ।

—୪—

ରୂପନାର ଧନ ଅଧରେ ଅଧରେ ଅଭୁ ସମୟ ଲଭ ଭରି ଭରୁନାହିଁ
ଧୀରେ ହୃଦ ଦୋଳ ଦୁଳିଦୁଳି ଦେଖ ଅନୁରାଗେ ବନ୍ଧ ବରୁନାହିଁ ।

—୫—

ତପସ୍ୱିନୀ କୋଟି ତପ ଧ୍ୟାନେ ରହୁ ବୈରାଗ୍ୟ-ବିଷ ଜାଣି ଜାଣୁନାହିଁ
ଦେହବାସ କଥା ଭଲେ ଦେଲେ ବ୍ୟଥା ରମଣୀମଣି ମଣି ମଣୁନାହିଁ ।

—୬—

କରଣ-ସ୍ପନ୍ଦନ କରଣ-ବିଳାସ ବିରହେ ମନୁ ଖେଳ ଖେଳୁନାହିଁ
ଯେ ରୂପ-ଭାଗ୍ୟ ନିଜ ସଙ୍ଗବାସ ସିନା ଜୀବନ ଭରେ ଭଜ ଭଜୁନାହିଁ ।

[ସୁର—କେଁନା କେଁନା ପଶୁ ଏ ବୁଝନ୍ତ-ହାର-ତାଳ-ବର୍ଣ୍ଣନ]

ଖାଣା —

—ମୋହୁଛି—

ମୋହନ—

ବଦନ

ମନ

ମୋହୁଛି ମୁଁ,—

ଭାବିମି—

ଜୀବନ—

ଯେନା

କାଳିଆ ବରନ [ଘୋ]

ତ୍ରିଭଙ୍ଗିମା-ରୂପ-ଠାଣି

ବାଙ୍କ-ନୟନ-ଚାହାଁଣି

କୋଟୀ କନ୍ଦର୍ପ ଜିଣି

ହରେ ପରସନ—ମନ—

ମଧୁର-ମୁରଲୀ-ଧର

ରସିକ-ରସ-ପସର

ହସହସ ସୁଧା-ଭର—

ଅଧର-କମ୍ପନ— ମନ—

ଅଳ୍ପା ହରେ ବ ସୁନ୍ଦର

ଛନ୍ଦା-ଚରଣେ ନୂପୁର

ଜାଣେ ସେ କେତେ ହୃଦର

ବଗଳ-ଜୀବନ —ମନ—

[ହ୍ଵର—ସେହି ଚନ୍ଦ୍ର-ମୁଖ ମନେ]

ଘଣା—

## —ଆସେ ପରା !—

ଆଁସେ ପର୍ ନାଚ
ସେ—
ଶିଖି-ଚନ୍ଦ୍ର-ଚୂଳିଆ
ସହି ଗୋ,
ବଂଶୀ-ବିନୋଦିଆ—
ପ୍ରଫୁଲ୍ଲ-ଛତ୍ରେ ଅଙ୍ଗ
ପ୍ରସନ୍ନ ବେଶ ସାଜ
ଛ ଭଙ୍ଗିରେ ଝୁଲି
ହୁଏ ଠିଆ—୧—
ନିର୍ଜ୍ଜନ-କୁଞ୍ଜବନେ
ମୋହନ-ମନ୍ତ୍ର-ସ୍ୱନେ
ବଂଶୀ ବାଏ କେଡ଼େ
ସାହସିଆ—୨—
କହ କପଟ-ଛଟା
ନ କରୁ ହଟହଟା
ନଟଖୁଟିଆ ବ୍ରଜ—
ରସିଆ—୩—
ନ ଜାଣେ ଛନ୍ଦ ବିଧି
ଲେଶ ସେ ସତ୍ୟବାଦୀ
ଜୁହାର ସେ କଦମ୍ବ—
ମୂଳିଆ—୪—
[ସ୍ୱର—ଆଜ୍ଞା ମୋତେ ଲାଗି ସେ ଗେନୁ ସେନୁ ଗେନୁଆ]

## —ଧରମ-ଧ୍ୱଜା—

ବୀଣା ଗୋ ମୋ'ହନ ବାଜା——

ଶିଖୁଛୁ ପଣ ଯେ ଶିଖି—

ଚୂଳଅର ବଂଶୀ ଦେଖି

ନବ ଯୋଷା ଉଷାଳଯା

ଅଣା—

ଯାଉ ସାଜ, ସଜ୍ଜା ୧—

ପୁଲକ ଓ ସଙ୍ଗୀତ

ଅଙ୍ଗେ ହୁଏ ଅଙ୍କିତ

ସେ ଯେ ଭ୍ରମେ ବୋଲି 'ରଜା'

ଯୁବା—

ନାଟ୍-ଦମ୍-ଦଜା ୨—

ଲୁଚଥିଲେ ଏ କୁଞ୍ଜେ

ହରଷୀ-ସମୀରେ ସଙ୍ଗେ

ଛମଛମ— ଧୀର ନୃତ୍ୟେ

ପ୍ରେମେ—

ପଛୁ ଆଖି-ଭୂଜା ୩—

ସେ ତ ସତ୍ୟ-ଶୋଭହରା

ମୋହନ ମୂରତି ପଣ

ପ୍ରେମ-ଧନେ ମନେ ମନେ

ଧରି—

ଧରମର ଧଜା ୪—

[ ସ୍ୱର—ବଜାବେ ଢବକ୍ ଢାଳ ]

## —ଭଜ ରାଧେ—

ଆଜ  ଆଦରେ ମୋଦରେ

ହୃଦରେ ମଧୁରେ

'ହରେ କୃଷ୍ଣ ହରେ' ଭଜ ରାଧେ—

ସେ ନୀଲ ସୁନ୍ଦର

ଶ୍ୟାମ  ନଟବର

ମୁନିଙ୍କ  ମାନସ-ହଂସ  ମାନସର

ପ୍ରେମର ଆସ୍ପଦ

ସ୍ନେହର ସମ୍ପଦ

ସେ ମୁଖ ସୁଖଦ ଭଜ ରାଧେ—

ଚର-ଚର୍‌-ଶ୍ରେଷ୍ଠ

ସେହୁ  ବନମାଳୀ

ତାଙ୍କ ଗଳେ ଭୁ ଗୋ ଜପ-କଣ୍ଠିମାଳ

କୃଷ୍ଣ-ନାମାବଳୀ

କୃଷ୍ଣ ବୋଲ ଖାଳ

ଦୁଃଖେ  ଦେ ଅଞ୍ଜଳ, ଭଜ ରାଧେ—

[ ସ୍ୱର—(ଆଜ) ସାଗରେ ଭୂଧରେ ପ୍ରାନ୍ତରେ ଅମ୍ବରେ ]

ଝିଣା—

## —ଅନୁଭୂତି—

ପଡ଼ିଗଲା ଲୋ ମାଁ
କାଲି କଳାକାହ୍ନୁ-ଆଗୁଠା
        ଥୋଇଗଲା ମୋ ଦେହଠା
                ଦେଖି ଯମୁନା-ଲେଉଟା —ଧ୍ରୁବ—

        ମୋହନ ମୁରଲୀ-ମୁଖ
        କାଳଯାକ ଦେଲା ଦୁଖ
                କୁଳ-ଶୀଳ-ସ୍ନେହ-ସୁଖ ଛଡ଼ି ଗଲି ତା ପାଖଠା—

କଛ କଛ ନୀପ-ମୂଳେ
କେତେ ରଙ୍ଗେ କୁତୂହଳେ
        ପ୍ରେମେ ମର୍ଜ୍ଜି ବଂଶୀ—ଭୋଳେ ଗାଏ ବସି ମୋ ନାମଠା—

        ଖୋଜେ ବୁଲୁଥାଏ ମୋତେ
        ଗୁପତେ ଲୁଚି ନିରତେ
                ଦିନେ ଉପବନ-ପଥେ କଲା ଯେତେ ହଟହଠା—

ନୁଆଁ-ନାରୀ-ମନ-ଚୋର
ଦିଏ ନାହିଁ ଆଉ ଧର
        ଘର ଘର ବୁଲି ପରି ପଡ଼ୁଛି ତାର ପାଗଠା—

        ସତ୍ୟବାଦୀ ଶତବାର
        ସେ ପଦେ କରେ ଜୁହାର
                ଅନୁସରେ ପିନା ତାର ଅଦର ଅନୁରାଗଠା—

[ସ୍ୱର—ପ୍ରାଣ ସଙ୍ଗିନୀରେ କାଲି ମୁଁ ଦ]

## —ମନ୍ଦର-ଧର—

ମନ୍ଦର-ଧରର ଗୋ, ପ୍ରୀତି ସଙ୍ଗ ଛନ୍ଦ ମନ୍ଦ——
ବନ୍ଦ୍ୟ ସ୍ମର-ଶମ୍ବର ସେ ନନ୍ଦ-ହୃଦ-କୁମୁଦାନନ୍ଦ
ଯୌବନ-ରୂପ କି ପସନ୍ଦ
ମଞ୍ଜୁଳ ଗତି ମନ୍ଦ ମନ୍ଦ
ଯମୁନାରେ ଜଗି ରହନ୍ତି
ଏକୁଟିଆରେ ନ ଯିବୁଟି
ସଙ୍ଗମେଳେ କୁମ୍ଭ ହସ୍ତେ ସତର୍କେ ଅସୁ ଥିବୁଟି
ବଂଶୀ ବାଇ ଡାକ ଦେଲେଟି
ଅଡ଼େ ଗୃହକୁ ଚଳେଟି
ଛନଛନେ ଶୁଣି ଚମକି
ଚାହିଁ ଦେବୁ ନାହିଁଟି —୧
ଲାଜ ମହତ ଡର ଯାହାର ନାହିଁ ଲେଶ ବିଚାର
ବଚନ କି ସ୍ଥିର ତାହାର
ଛାଡ଼ ସେ ପ୍ରୀତିର ବେଭାର
କଳା-ମୁଖ-ବାଣୀ ଶୁଣି ଭୁଲନା
କଳା-ଛଇରେ କେବେ ଭୁ ଶୁଲନା
ଭଗାର-ହସାରେ ସତ (ଲୋଡ଼ା) ମରିବୁଟି ଝୁରି ସିନା
ସେ କୀର୍ତ୍ତି-ମୂରତି-ନାଥ-
ସାଥି ଅଟି ଅବାଧ
ଯା'ର ଭକ୍ତି-ମନ୍ତ୍ର ଜପି
ଜପଇ ସତ୍ୟବାଦୀ —୨

[ ସ୍ୱର—ମାଇ ଫେଷନ୍ ପୋଲିଷନ୍ ]

ଗୀତ—

## —ଭାବାବେଶେ—

କୃଷ୍ଣେ ଖୋଜ ଏ—
ବ୍ୟଥା ପାଉଛି ପ୍ରାଣ,
ଆକୁଳେ ଉଡ଼ି ଯାଉଛି
ଥର ଥର ଗୋ—
ଦେହ ଥରୁଛି, ନୟନରୁ
ନିରବେ ଲୁହ ବହୁଛି—ଧ୍ରୁ—
ପାପିନୀ ମୁଁ କଷ୍ଟେ
ବଡ଼ ଅଭାଗିନୀ
କୃଷ୍ଣ-ପ୍ରେମେ ଝୁରି ମରୁଛି
ଯାଉ ଏଜୀବନ
ଯଉବନ
(ଯଦି) କୃଷ୍ଣ-କୃପା ନୋହୁଛି—

ବାଜ ରେ ମୁରଲୀ
ଉଚ୍ଚ ସ୍ୱରେ ଥରେ
କୃଷ୍ଣ-ମାୟା ଛାଡ଼ି ନୋହୁଛି
ଛାଡୁ ଭୁଲି ଯିବା ସେ ମହିମା
ବାଜ ବାଜ
ବଂଶୀ ଉଚ୍ଚେ ଡାକୁଛି——

[ ସ୍ୱର— କେନ ନୟନ-ଜଲ ଦାଓ ନା— ]

ଧୀମା—

—ତିଅଠାର—

ଜୟ ଯଦୁ-ନନ୍ଦନ କୃଷ୍ଣ ଭଗବାନ

ଭକତ-ଜୀବନ ଦୟାମୟ—ଠ—

୧

ମଦନ-ମୋହନ ସୁନ୍ଦର-ବଦନ

ଶ୍ୟାମ-ବରଣ ବନ-ଭୂଷ

କମଳ-କୋମଳ-ଦାମ-ମଞ୍ଜୁଳ-ଢଳ-ଢଳ—

ନୟନ-ଯୁଗଳେ ଦୟା ଠାଣ—ହେ ବ୍ରଜପତି—

୨

ଗୋପୀଜନ-ମନ-ରଞ୍ଜନ ବରଜ-ବିମୋହନ

ଜଳଦ-ବରଣ-ବେଣୁଧାର

ମୁକ୍ତ-ମନ-ବନ୍ଧନ ସ୍ୱୟମ୍ବରନିଜବର

ସୁଧା-ହୃଦୟ-ସଦାର—ହେ ନଟବର—

୪

ପ୍ରଭୁ, ମଦନମୋହନ-ଦେବ ଧରାଧର

ତବ ପଦ-ପ୍ରେମ ଯାଚାଏ

ଅନେକ-ପାପୀଙ୍କ-ସଙ୍ଗ-ମୁକ୍ତ ମଣ୍ଡଳ

ନନ୍ଦଦାସ ହେଉ ବାସ —ହେ ହରି ହରି—

[ ସୁର—ନନ୍ଦଅବାହି ଦେଖ ଦେ ଥରି ]

ଅଣି ଛେ-

୪—୧୦—୧୯୬୭

ବୀଣା—

## —କାହାପାଇଁ—

ପୀରତି-କୁସୁମ-ହାର
ଦେବି କାହାକୁ ମୁଁ ଉପହାର
ବନ୍ଧୁ— ପରବାସେ ରହି
ପ୍ରୀତି-ଅଭିଳାଷୀ
ହେଲେଣି ଏବେ କାହାର——
ବିକଶିବ ପ୍ରଭାକର
ଭସ୍ମ ଲାଗେ କେତେ ପରକାର
ନିତି— ଶୋକ-ହସା-ମତି-
ଭିତରେ ମୋ ଗତି
ପଥ ଅତି ଅନ୍ଧକାର—୧
ସେତ—— ପ୍ରେମ-ରସ-ପାରାବାର
ଜୀର୍ଣ୍ଣ—— ଜୀବନ-ତରୀ ମୋ ଛର
ଲାଗେ—— ବସନ ଭୂଷଣ
ଅଶନ ଶୟନ
ବିଷମ ବିଷ ପ୍ରକାର—୨
ନିରତେ କରେ ବିଶ୍ୱର
ଅନ୍ୟ—— ଗତି ନାହିଁ ଏ ସଂସାର
ସତ୍ୟ—— ଚନ୍ଦ୍ରେ ନିରନ୍ତର
ସେ ପ୍ରେମ-ସୁନ୍ଦର—
ସ୍ନେହ-ସୁଖ ସିନା ସାର—୩
[ ସ୍ୱର:— ଅହାଙ୍କ ଅସମ ଗନ୍ଧ ]

ବୀଣା—

## —ପ୍ରଣତି—

ଜୟ ମାଧବ ବ୍ରଜ-ଭୂପ
ହରି ହେ ନମ

ଜୟ ସୁନ୍ଦର ହଂସରୂପ
ହରି ହେ ନମ
ଜୟ ଜୟ
ଦେବ ଦେବ-ବଲ୍ଲଭ
ବନ୍ଧୁ ହେ ନମ—ଧ୍ରୁ—

ସର୍ବ-ଜ୍ୟୋତିର୍ମୟ ପରମ ଧାତା,
ଜ୍ଞାନାଲୋକମୟ ମୁକତି-ଦାତା,
ନିଖିଳ ଜୀବ-ସଂସାର-ସୃଷ୍ଟି-କରତା,
ସରଗଧାମେ, ନରବକାମେ ନାମ ତବ ପରମ —୧

ନିତ୍ୟ, ନିର୍ବିକାର, ଶୁଦ୍ଧ, ସରଳ,
ଅନନ୍ତ, ଅବ୍ୟକ୍ତ, ଭାବ-ବିହ୍ୱଳ
ବନ୍ଦନୀୟ, କମଳ-ପଦ-ଯୁଗଳ
ଦୀନ-ବନ୍ଧୁ, ହେ ଦୟାସିନ୍ଧୁ ନିର୍ମଳ ହୃତ୍ତମ—୨

ପୁଣ୍ୟପୁଞ୍ଜ ହାସ୍ୟ-ପ୍ରେମ ବରେଣ୍ୟ,
ଶାନ୍ତ ଶୀଳ ଜଗଦୀଶ-ଶରଣ୍ୟ,
ଚିର-ମଧୁର ହାସ୍ୟ-ହୃଦୟ ଧନ୍ୟ,
ମଙ୍ଗଳ-ପ୍ରଦ, ତବ ସଂପଦ ଅକ୍ଷୟ ଅସମ—୩

[ ସ୍ୱର—ଜୟ ଉଚ୍ଛଳ ଜନନୀର ଚରଣେ ନମ ]

